# ଜ୍ଞାନଦର୍ପଣ ।

ଶ୍ରୀ ବିଶ୍ୱେଶ୍ୱର ତ୍ରିପାଠୀ ତର୍କସିଦ୍ଧାନ୍ତଙ୍କ
ପ୍ରଣୀତ ।

ହିନ୍ଦୋଳାଧିପତି
ଶ୍ରୀ ଶ୍ରୀ ନବକିଶୋରଚନ୍ଦ୍ର ସିଂହ ମର୍ଦ୍ଦରାଜ ଜଗଦ୍ଦେବ
ରାଜାବାହାଦୁର ମହୋଦୟଙ୍କ ଆନୁକୂଲ୍ୟରେ
ଦ୍ୱିତୀୟବାର ପ୍ରକାଶିତ ।

ଦ୍ୱିତୀୟ ସଂସ୍କରଣ ।

**Printed by V. Kar**
THE UTKAL SAHITYA PRESS,
**CUTTACK**
**1925.**

ମୂଲ୍ୟ ଠ ୦ ୯/

# ଉତ୍ସର୍ଗପତ୍ର ।



ପରମମାନନୀୟ ବିବିଧ ସଦ୍ଗୁଣବିଭୂଷିତ ସ୍ୱସ୍ତି

ଶ୍ରୀ ହିନ୍ଦୋଳାଧିପତି ଶ୍ରୀ ଶ୍ରୀ ନବକିଶୋରଚନ୍ଦ୍ର, ସିଂହ

ମର୍ଦ୍ଦରାଜ ଜଗଦେବ ରାଜାବାହାଦୁର ମହୋଦୟ

ମହିମାବରେଷୁ—

ମହାରାଜ !

ମୁଁ ମୋର ଏହି ଭାଷାରଚିତ "ଜ୍ଞାନଦର୍ପଣ" ନାମକ ପୁସ୍ତକକୁ ଭବଦୀୟ ପବିତ୍ର କରକମଳରେ ଭକ୍ତିର ସହିତ ଅର୍ପଣ କଲି । ମାତ୍ର ସାଦରେ ଗ୍ରହଣ କରାଗଲେ ଚରିତାର୍ଥ ହେବ ।

ଭବତାଂ ଶୁଭାକାଂକ୍ଷୀ

ଚିରାଶ୍ରିତ

ଶ୍ରୀ ଦିବ୍ୟେଶ୍ୱର ତ୍ରିପାଠୀ ଚକସିବାନ୍ତ ।

# ମୁଖବନ୍ଧ ।



ହିନ୍ଦୋଳର ଭୂତପୂର୍ବ ରାଜା ମାନଙ୍କର ଜନାର୍ଦ୍ଦନ ସିଂହ ମର୍ଦ୍ଦରାଜ ଜଗଦେବ ମହୋଦୟ ନାନାଦି ତୀର୍ଥ ପର୍ଯ୍ୟଟନ କରିବା ସମୟରେ ବଦ୍ରିକା ଅଞ୍ଚଳରେ ଏକ ପଣ୍ଡିତ ସନ୍ନ୍ୟାସିଙ୍କଠାରୁ ଧର୍ମସମ୍ପର୍କୀୟ ଉପଦେଶ ଗ୍ରହଣ କରିଥିଲେ । ପରେ ସେହି ମହାତ୍ମାଙ୍କୁ ସଙ୍ଗରୁ ପ୍ରାପ୍ତ ଭକ୍ତିର ପାତ୍ର ମନେ କରି ନିଜର ଭବିଷ୍ୟତ ବିଷୟ ପଚାରିବାରେ ସାଧୁ ମହୋଦୟ ଭବିଷ୍ୟତ ଘଟନାମାନ ଲେଖି ଦେଇ ସାକ୍ଷାତର ସ୍ମରଣ ସକାଶେ ଦେଶରେ "ହରିଦ୍ୱାର" ନାମରେ ଗୋଟିଏ ମେଳା ପ୍ରତିଷ୍ଠା କରାଇବା ପ୍ରତି ଉପଦେଶ ଦେଇଥିଲେ । ଏପରି ସ୍ୱର୍ଗୀୟ ମହୋଦୟ ସେହି ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ରଚନା କରିବା ପ୍ରତି ଆଦେଶ ଦେଇଥିବାରୁ ମୁଁ ସାଧୁ ମହାତ୍ମାଙ୍କୁ ବକ୍ତା ଓ ରାଜା ମହୋଦୟଙ୍କୁ ଶ୍ରୋତା ରୂପରେ କଳ୍ପନା କରି ଦର୍ଶନ, ଉପନିଷଦ ଓ ପୁରାଣାଦିରୁ ସାର ସାର ବିଷୟ ସଂଗ୍ରହପୂର୍ବକ ଏହି "ଜ୍ଞାନଦର୍ପଣ" ପୁସ୍ତକ ରଚନା କରିଥିଲି; ମାତ୍ର ନାନାଦି ଅସୁବିଧାବଶତଃ ତାହା ଛପା ହୋଇ ପାରି ନ ଥିଲା । ବର୍ତ୍ତମାନ ହିନ୍ଦୋଳାଧୀଶର ଶ୍ରୀଯୁକ୍ତ ନବକିଶୋରଚନ୍ଦ୍ର ସିଂହ ମର୍ଦ୍ଦରାଜ ଜଗଦେବ ରାଜାବାହାଦୁର ମହୋଦୟଙ୍କ ଆନୁକୂଲ୍ୟରେ ଉକ୍ତ "ଜ୍ଞାନଦର୍ପଣ" ପୁସ୍ତକ ମୁଦ୍ରିତ ହେବାରୁ ସେହି ମହୋଦୟଙ୍କ ନିକଟରେ କୃତଜ୍ଞତା ସ୍ୱୀକାରପୂର୍ବକ ଶିକ୍ଷିତ ସମାଜକୁ ଭକ୍ତିର ସହିତ ଅନୁରୋଧ କରୁଅଛି ଯେ, ସେମାନେ ନିଜ ନିଜ ଗୁଣରେ ଦୋଷ ମାର୍ଜନା କରି ଉକ୍ତ ପୁସ୍ତକ ସାଦରେ ଅବଲୋକନ କଲେ କୃତାର୍ଥ ହେବି ।

| | |
|---|---|
| ବାସସ୍ଥାନ — | ବଶମ୍ବଦ |
| ଶ୍ରୀରାମଚନ୍ଦ୍ରପୁର, ସତ୍ୟବାଦୀ, ପୁରୀ । | ଶ୍ରୀ ସିଦ୍ଧେଶ୍ୱର ତ୍ରିପାଠୀ |
| ହାଲ— ନିଜଗଡ଼ ହିନ୍ଦୋଳ । | ତର୍କସିଦ୍ଧାନ୍ତ । |



# ଜ୍ଞାନଦର୍ପଣ ।

## ପ୍ରଥମ ପରିଚ୍ଛେଦ ।



ପ୍ରଣମ୍ୟ ସଚ୍ଚିଦାନନ୍ଦଂ ଶ୍ରୀକାନ୍ତଂ ଜଗଦୀଶ୍ୱରଂ ।
ବିଦ୍ୟାବତାଂ ବିନୋଦାୟ କ୍ରିୟତେ ଜ୍ଞାନଦର୍ପଣଂ ॥

ଏକ ସମୟରେ ହିନ୍ଦୋଳର ଭୂତପୂର୍ବ ରାଜା ଜନାର୍ଦ୍ଦନ ସିଂହ ମର୍ଦ୍ଦରାଜ ଜଗଦ୍ଦେବ ମହୋଦୟ ଗଙ୍ଗାର ପବିତ୍ରତମ ଜଳରେ ସ୍ନାନ କରି ନିଜେ ପବିତ୍ର ହେବା, ଗୟାତୀର୍ଥର ଫଲ୍‌ଗୁ ନଦୀ ତଟରେ ଶ୍ରାଦ୍ଧକ୍ରିୟା ସମାପନ କରି ପିତୃପିତାମହାଦିଙ୍କୁ ଉଦ୍ଧାର କରିବା ଓ ଅନେକ ନଗର ନଗରୀ ଦର୍ଶନ କରିବା ଅଭିଳାଷରେ ତୀର୍ଥଯାତ୍ରାରେ ପ୍ରବୃତ୍ତ ହୋଇଥିଲେ । ସେହି ରାଜା ନିଜଦ୍ୱାରଠାରୁ ଗଗନସ୍ପର୍ଶୀ ପର୍ବତମାଳାର ପ୍ରାକୃତିକ ଶୋଭା ସନ୍ଦର୍ଶନ କରି ଯାଉଁ ଯାଉଁ କେତେକ ଦିନ ପରେ ସ୍ୱର୍ଣ୍ଣକଳଶବିଭୂଷିତ ଭଗବାନ୍ ବଦ୍ରୀନାରାୟଣଙ୍କ ଶ୍ରୀମନ୍ଦିରରେ ପହଞ୍ଚି ଦର୍ଶନାନ୍ତେ ବିଶ୍ରାମ କଲା ପରେ, ହିମଶ୍ରେଣୀ ଭୂଦେଶର ନୈସର୍ଗିକ ଶୋଭା ଦେଖି ଦେଖି ତାହାର ଅନତିଦୂରରେ ଗୋଟିଏ ପବିତ୍ର ଆଶ୍ରମ ଥିବାର ଜଣାଗଲା । ସେହି ପୁଣ୍ୟମୟ ତପୋବନ ପରମରମଣୀୟ, ତାହା ନାନାବିଧ ଫଳ ଓ କୁସୁମ-ପାଦପପରିବୃତ । ସେହି ଆଶ୍ରମର କେଉଁ କେଉଁଠାରେ ତାଳ, ତମାଳ, ହେନ୍ତାଳ, ପୂଗ, ନାରିକେଳ, ରସାଳ, ଶାଳ, ପିଆଳ, ବକୁଳ, ଚମ୍ପକ, ଅଶୋକ, କୁରୁବକ, ଲବଙ୍ଗ, ପୁନାଗ, ବଟ ଓ ଅଶ୍ୱତ୍ଥ ପ୍ରଭୃତି ବୃକ୍ଷ ଶ୍ରେଣୀ ସୁସଜ୍ଜିତ ଏବଂ ଫଳାଢ୍ୟ ହୋଇ ଶାଖା ଶାଖାରେ ଆଲିଙ୍ଗନ-

ବ୍ୟାକ ସ୍ନିଗ୍ଧଚ୍ଛାୟାମଣ୍ଡଳ ସର୍ଜ୍ଜନା କରଅଛୁ । କେଉଁ କେଉଁଠାରେ ସେବତୀ, ମାଳତୀ, କେତକୀ, ତଗର, କୁନ୍ଦ, ଚମ୍ପକ ଓ ଯୂଥିକା ପ୍ରଭୃତି ନାନାବିଧ କୁସୁମବୃକ୍ଷ ଫୁଲଜାଲରେ ସୁଶୋଭିତ ହୋଇ ବିମଳ ପରିମଳ ବିତରଣ କରୁଅଛୁ । କେଉଁ କେଉଁଠାରେ ଭ୍ରମରମାନେ ଗୁଣୁଗୁଣୁ ରବ କରି ପୁଷ୍ପରୁ ପୁଷ୍ପାନ୍ତରକୁ ଭ୍ରମଣ କରି ମକରନ୍ଦ ପାନ କରୁଅଛନ୍ତି । କେଉଁ କେଉଁଠାରେ ଚମରୀଶିଶୁମାନେ ସ୍ନିଗ୍ଧ ଛାୟାତଳେ ଶୟନ କରି ରୋମନ୍ଥ କରୁଅଛନ୍ତି । କେଉଁ କେଉଁଠାରେ କୃଷ୍ଣସାରମୃଗଗଣ ଇଙ୍ଗୁଦିବୃକ୍ଷ ତଳେ ସ୍ୱଚ୍ଛନ୍ଦ ଭାବେ ବିଚରଣ କରି ଅନାୟାସଲବ୍ଧ ଭୂମିପତିତ ଫଳମାନ ଭକ୍ଷଣ କରୁଅଛନ୍ତି । ସେହି ଆଶ୍ରମର ଅନତିଦୂରରେ ବରାହ ଓ ମାତଙ୍ଗଗଣ ଇତସ୍ତତଃ ଧାବମାନ ହେବାରେ ପବିତ୍ର ତପୋବନର ଶାନ୍ତିଗୁଣ ପ୍ରକାଶ ପାଉଅଛୁ । କେଉଁ କେଉଁଠାରେ ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ରଜନ୍ତୁଗଣ ପରସ୍ପରର ବଧ ବିଧକତା ଛାଡ଼ି କେବଳ ଶବ୍ଦ କରିବାଦ୍ୱାରା ସେହି ତପୋବନର ମହିମା ବୃଦ୍ଧି କରୁଅଛନ୍ତି ।

କେଉଁ କେଉଁଠାରେ ଶୁକ, ପିକ, ଶାରିକା ପ୍ରଭୃତି ପକ୍ଷୀମାନେ ଛାୟାପାଦପର ନିବିଡ଼ ପତ୍ରାବଳି ମଧ୍ୟରେ ଉପବେଶନ କରି ନାନାକଳ-କଣ୍ଠ ରବରେ ଶ୍ରବଣବିମୋହନସ୍ୱରରେ ଅନୁପ ଅପେ ଗାନ କରିବାରେ ପ୍ରବୃତ୍ତ ହୋଇଅଛନ୍ତି । କେଉଁ କେଉଁଠାରେ ଛାୟାପାଦପର ଅଧଃସ୍ଥିତ ଶାଖାର ଉପରିଭାଗରେ ମୟୂର ଓ ମୟୂରୀବୃନ୍ଦ ଶାଖାରୁ ଶାଖାନ୍ତରରେ ନୃତ୍ୟ କରି ବୁଲୁଅଛନ୍ତି । ସେହି ଆଶ୍ରମକୁଟୀରର ସମ୍ମୁଖରେ ଶୁଦ୍ଧାଶୟ ବାଳକ ଓ ବାଳିକାଗଣ ନିଜ ନିଜ ଅଭିଷିକ୍ତ ପାଦପଗଣଙ୍କର ବନ୍ଧାଳବାଳ ଜଳଦେଶରେ ସୁମଧୁରସ୍ୱରରେ ଗାୟନ କରି ମନ୍ଦ ମନ୍ଦ ଭାବରେ ଜଳ-ସେଚନ କରୁଅଛନ୍ତି । ସେହି ଆଶ୍ରମର କେଉଁଠାରେ ମୃଗଶାବକମାନେ ନିର୍ଭୀକଭାବରେ ବାଳକ ଓ ବାଳିକାମାନଙ୍କ ପଛେ ପଛେ ଆନନ୍ଦରେ ଧାବମାନ ହେଉଅଛନ୍ତି । ସେଠାରେ ସାଧୁ ପଣ୍ଡିତମାନଙ୍କ ସୁତ୍ରପାଠ ଧୀର

ଗମ୍ଭୀର ସୁମଧୁରସ୍ୱର ଉଦ୍‌ଗୀତ ହେବାରେ ସେହି ଶାନ୍ତମୟ ତପୋବନର ପବିତ୍ରତା ବୃଦ୍ଧି ପାଉଅଛି ।

ଏପରି ମହାମତି ରାଜା ଜନାର୍ଦ୍ଦନ ସେହି ଆଶ୍ରମର ନିକଟରେ ଦେଖିଲେ ଯେ, ହସ୍ତରେ ଦଣ୍ଡକମଣ୍ଡଳୁ, ମସ୍ତକରେ ଜଟାଜାଲ, ଅଙ୍ଗରେ କୃଷ୍ଣସାରମୃଗଚର୍ମ-ଉତ୍ତରୀୟ, ଅଶେଷ ମାଳାଳଂକୃତବକ୍ଷସ୍ଥଳ, ସର୍ବାଙ୍ଗ ଚନ୍ଦନବିଲେପନ, ହର୍ଷୋତ୍‌ଫୁଲ୍ଲନୟନ, ସୁଗୌରବଦନ, ପ୍ରତ୍ୟୁଷମାର୍ତ୍ତଣ୍ଡ-ମଣ୍ଡଳମୟୂଖସଦୃଶଲଲାଟ, ଦୀର୍ଘାକୃତି ଶରୀର, ଧୀରଗମ୍ଭୀରପ୍ରଶାନ୍ତହୃଦୟ, ଅନୁଗ୍ରହପରାୟଣ, କ୍ଷମାଶୀଳ, ଆତ୍ମପରଜ୍ଞାନଶୂନ୍ୟ, ମୂର୍ତ୍ତିମାନ୍ ତେଜଃପୁଞ୍ଜ ପ୍ରାୟ ଅନିର୍ଦ୍ଦିଷ୍ଟନାମୈକତପସ୍ୱୀ ବିଷ୍ଣୁପଦୋଦ୍ଭବା ପୁଣ୍ୟସଲିଳା ସୁରନଦୀର ପବିତ୍ରତମ ଜଳରେ ସ୍ନାନସନ୍ଧ୍ୟାଦି ସମାପନ କରି ହରିନାମାମୃତ ଗାନରେ ଉନ୍ମତ୍ତ ପ୍ରାୟ ହୋଇ ଭକ୍ତିଗଦ୍‌ଗଦ୍‌ଭାବରେ, ସେହି ଭକ୍ତବତ୍ସଳ କରୁଣା-ଧାର ଭଗବାନ୍ ଶ୍ରୀହରିଙ୍କର ସ୍ତବ ଆରମ୍ଭ କଲେ ।

ହେ ବିପଦୋଦ୍ଧାରକ ଦେବାଧିଦେବ ବସୁଦେବପୁତ୍ର ! ଆଃ, ଆପଣ ନୃସିଂହରୂପେ ଅବତୀର୍ଣ୍ଣ ହୋଇ ସେହି ହିରଣ୍ୟକଶିପୁର ବକ୍ଷ ବିଦାରଣପୂର୍ବକ ସ୍ୱୀୟ ପରମଭକ୍ତ ପ୍ରହ୍ଲାଦର ଭକ୍ତିପାଶରେ ଆକୃଷ୍ଟ ହୋଇ ତାଙ୍କୁ ଘୋରତର ବିପଦରୁ ଉଦ୍ଧାର କରିଅଛନ୍ତି ।

ହେ କଲ୍ୟାଣନିଦାନ ! ଆପଣ ଜଗତର ହିତ ସକାଶେ ପ୍ରବଳ-ପରାକ୍ରାନ୍ତ ହୟଗ୍ରୀବ ନାମଧେୟ ଦୁର୍ଜ୍ଜୟ ଅସୁରକୁ ଜୟ କରି ଈଶ୍ୱରୋଚ୍ଚାରିତ ଅପୌରୁଷେୟ ବେଦଚତୁଷ୍ଟୟ ଉଦ୍ଧାର କରିଅଛନ୍ତି ।

ହେ ବିଶ୍ୱରୂପ ! ଦେବଦାନବମାନଙ୍କ ଅମୃତମନ୍ଥନ କାଳରେ ଆପଣ କ୍ଷୀରୋଦସାଗରରେ କୂର୍ମରୂପେ ଅବତୀର୍ଣ୍ଣ ହୋଇ ମନ୍ଦରଗିରି ପୃଷ୍ଠରେ ଧାରଣ କରିଥିଲେ ।

ହେ ବସୁନ୍ଧରାଧାର ! ଆପଣ ବରାହରୂପରେ ଅବତୀର୍ଣ୍ଣ ହୋଇ ସ୍ୱୀୟ ଦଶନ ସାହାଯ୍ୟରେ ଅନନ୍ତ ଓ ଅତଳସ୍ପର୍ଶ ସମୁଦ୍ର ମଧ୍ୟରୁ ହିରଣ୍ୟ ବସୁନ୍ଧରାଙ୍କୁ ଉଦ୍ଧାର କରିଅଛନ୍ତି ।

ହେ ଗର୍ବନାଶକ ! ଆପଣ ଦାନଗର୍ବିତ ବଳିରାଜାଙ୍କୁ ଛଳନା କରି ଅଦିତିଗର୍ଭରୁ ବାମନରୂପେ ଅବତୀର୍ଣ୍ଣ ହୋଇ ସ୍ୱୀୟ ଯୁଗଳପଦରେ ସ୍ୱର୍ଗ ଓ ମର୍ତ୍ତ୍ୟ ଧାରଣପୂର୍ବକ ବଳିର ଦର୍ପହାରକ ହୋଇଅଛନ୍ତି ।

ହେ ଦୁଷ୍ଟଦମନ ! ଆପଣ ହୈହୟ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନର ଘୋର-ତର ଅପରାଧର ପ୍ରାୟଶ୍ଚିତ୍ତ ବିଧାନ ନିମିତ୍ତ ଜମଦଗ୍ନିଙ୍କ ପୁତ୍ରତ୍ୱ ସ୍ୱୀକାର-ପୂର୍ବକ ପରଶୁରାମରୂପେ ଅବତୀର୍ଣ୍ଣ ହୋଇ ଏକବିଂଶତିବାର କ୍ଷତ୍ରିୟକୁଳ ସଂହାର କରି ଶୌର୍ଯ୍ୟବୀର୍ଯ୍ୟାଦିରେ ବ୍ରାହ୍ମଣଜାତିକୁ ଗୌରବାନ୍ୱିତ କରିଅଛନ୍ତି ।

ହେ ଭୂଭାରନାଶକ ! ଆପଣ ଦଶରଥଙ୍କର ପୁତ୍ରତ୍ୱ ସ୍ୱୀକାରପୂର୍ବକ ସେହି ଲୋକାଭିରାମ ରାମଚନ୍ଦ୍ରରୂପେ ଅବତୀର୍ଣ୍ଣ ହୋଇ ବଳଗର୍ବିତ ଦଶାନନକୁ ସମୂଳେ ବିନାଶ କରି ରାବଣାରି ନାମ ବହନ କରିଅଛନ୍ତି ।

ହେ ଶାନ୍ତିପ୍ରଦ ! ଆପଣ ହଳ ଓ ମୂଷଳର ସାହାଯ୍ୟରେ ବସୁନ୍ଧରାର ଦୁର୍ବହଭାର ଲାଘବ କରିବା ସକାଶେ ବଳଦେବରୂପେ ଅବତୀର୍ଣ୍ଣ ହୋଇ-ଥିଲେ ।

ହେ ବ୍ରହ୍ମରୂପ ! ଆପଣ ସ୍ୱୟଂ ବୁଦ୍ଧରୂପେ ଅବତୀର୍ଣ୍ଣ ହୋଇ ଏହି ଜଗତ୍ ମଧ୍ୟରେ ଏକେଶ୍ୱରବାଦ ଓ ଅହିଂସାଧର୍ମ ପ୍ରଚାର କରିଅଛନ୍ତି ।

ହେ ଦୁରାଚାରବିନାଶକ ! ଆପଣ କଳିର ଅନ୍ତେ ଅଧର୍ମାଚାରୀ ପ୍ରାଣୀମାନଙ୍କୁ ତୀକ୍ଷ୍ଣଧାର ଅସିଦ୍ୱାରା ସଂହାର କରିବା ସକାଶେ କଳ୍କୀରୂପେ ବିରାଜମାନ ହୋଇଥାଅ ।

ପ୍ରଭୋ ! ଯେପରି ଆକାଶ ନଦ୍ୟ ଓ ଅନନ୍ତମୂର୍ତ୍ତିରେ ସର୍ବସ୍ଥଳରେ ବିରାଜମାନ ରହିଅଛି, ସେହିପରି ଆପଣ ବିଶ୍ୱରୂପତା ପ୍ରାପ୍ତ ହୋଇ ସର୍ବସ୍ଥଳରେ ଓ ବ୍ରହ୍ମାଦି କୀଟ ପର୍ଯ୍ୟନ୍ତ ସର୍ବଦେହରେ ଅଧିଷ୍ଠିତ ପରମେଶ୍ୱରରୂପେ ବିରାଜମାନ ହୋଇଅଛନ୍ତି ।

ଅନନ୍ତର ସେହି ଅନର୍ଦିଷ୍ଟନାମା ତପସ୍ୱୀ ଏହିପରି ସର୍ବଶକ୍ତିମାନ୍ ସର୍ବାନ୍ତର୍ଯ୍ୟାମୀ ଶ୍ରୀ ଶ୍ରୀହରିଙ୍କ ସ୍ତବ ଗାନ କରି କରି ହରିନାମାମୃତ ପାନରେ ବାହ୍ୟଜ୍ଞାନଶୂନ୍ୟ ଓ ଉନ୍ମତ୍ତନର୍ତ୍ତକ ତୁଲ୍ୟ କରତାଳରେ ପ୍ରତିଧ୍ୱନିତ କରି ସେହି ପବିତ୍ର ଓ ମନୋରମ ଆଶ୍ରମରେ ଉପସ୍ଥିତ ବ୍ରହ୍ମପରାୟଣ ସାଧୁପୁରୁଷମାନଙ୍କ ସମକ୍ଷରେ ଦଣ୍ଡାୟମାନ ହେଲେ ।

ଏହା ପରେ ସେହି ତପସ୍ୱୀ ମହାତ୍ମାଙ୍କ ହରିନାମାମୃତ ଗାନରେ ଉପସ୍ଥିତ ସାଧୁମାନଙ୍କ ଗାନ ଏକତ୍ରିତ ହେବାରେ ସେହି ପବିତ୍ରତମ ହରିଭକ୍ତିଭାବ ସେଠାରେ ଉଦ୍ବେଳିତ ହେଲା ।

ଅନନ୍ତର ଉପସ୍ଥିତ ସାଧୁମାନେ ତପସ୍ୱୀ ମହାତ୍ମାଙ୍କୁ ଉଚ୍ଚାସନରେ ବସାଇ ଯଥାସମ୍ମାନପୁରଃସର ପଚାରିବାକୁ ଆରମ୍ଭ କଲେ । ହେ ବ୍ରହ୍ମପରାୟଣ ଅଶେଷଶାସ୍ତ୍ରଜ୍ଞସମଦର୍ଶୀନ୍ ତପୋନିଧେ ! ବର୍ତ୍ତମାନ ସମୟରେ ଆପଣ ଜ୍ଞାନମାନଙ୍କ ମଧ୍ୟରେ ଶ୍ରେଷ୍ଠତମ, ଏଣୁ ଆପଣଙ୍କଠାରୁ ତତ୍ତ୍ୱ ଉପଦେଶ ପାଇବା ସକାଶେ ବହୁଦିନରୁ ଆମ୍ଭେମାନେ ପ୍ରତୀକ୍ଷା କରୁଅଛୁଁ । ଆଜ ଭାଗ୍ୟବଶତଃ ଆପଣଙ୍କୁ ସାକ୍ଷାତ୍ କରିବାଦ୍ୱାରା ଆମ୍ଭେମାନେ ଆପେ ଆପଣାକୁ କୃତକୃତ୍ୟ ମଣୁଅଛୁଁ । ଆପଣ ଏକା ଆମ୍ଭମାନଙ୍କର କାହିଁକି, ସଂସାରସ୍ଥ ମନୁଷ୍ୟମାନଙ୍କର ସନ୍ଦେହମୋଚନ କରିବା ସକାଶେ ସାକ୍ଷାତ୍ ଧର୍ମମୂର୍ତ୍ତିପ୍ରାପ୍ତ ବିରାଜମାନ ହୋଇଅଛନ୍ତି । ମହାଭାଗ ! ଆପଣ ଯେପରିକି ଅସୀମଶାସ୍ତ୍ର, ଇତିହାସ ଓ ପୁରାଣମାନ ଅଧ୍ୟୟନ କରିଅଛନ୍ତି, ତଦନୁରୂପ ସଂଶୟମାନ ମଧ୍ୟ ମୋଚନ କରି ପାରନ୍ତି, ଏଣୁ ଆପଣଙ୍କ ଦର୍ଶନରେ

ଅମ୍ଭେମାନେ ସଫଳକାମ ହୋଇ କୃତାଞ୍ଜଳିପୁଟରେ ପ୍ରାର୍ଥନା କରୁଅଛୁଁ ଯେ, ଆପଣ ଫଣଦ୍ଧୟମାନ ମୋଚନ କରିବା ହେଉନ୍ତୁ । ଏପରି ତପସ୍ୱୀ ମହାତ୍ମା ସାଧୂମାନଙ୍କ ଭକ୍ତିପୂର୍ଣ୍ଣବାକ୍ୟରେ ସନ୍ତୁଷ୍ଟ ହୋଇ ପ୍ରଶ୍ନର କାରଣ ପଗ୍ଚରିବାରୁ ସାଧୂମାନେ ନମ୍ର କଭାବରେ କହିବାକୁ ଆରମ୍ଭ କଲେ—ମହାଭାଗ ! ଦେଖୁ ଦେଖୁ ଘୋର ଭୟାନକ କଳିଯୁଗ ଆସି ଉପସ୍ଥିତ, କି ଉପାୟ ଅବଲମ୍ବନ କରି ଅମ୍ଭେମାନେ ଭବବନ୍ଧନରୁ ପାର ହୋଇ ଶ୍ରୀ ଜଗଦୀଶ୍ୱରଙ୍କର ସାନ୍ନିଧ୍ୟଲାଭରେ ସକ୍ଷମ ହେବୁଁ ।

ଯଥା :—

"ବେଦଂ ବେଦନକୋଽପି ଭୂଧରଦଶାଳୀନାମୂନୀନାଂ ଗିରଃ
ସ୍ୱଚ୍ଛଂ ମ୍ଳେଚ୍ଛମତଂ ଜନାସ୍ତଦନୁଗାଃ କା ନାମ ଧର୍ମ୍ମ୍ୟାଃ କ୍ରିୟାଃ ।
ମଦ୍ୟଂ ହୃଦ୍ୟମଗାଢବାଚବନିତାଃ ସେବ୍ୟା ନ ଗୁର୍ବାଦୟଃ
କିଂ କାର୍ଯ୍ୟଂ ପରିଶିଷ୍ଟମସ୍ତି କଥୟ ସ୍ୱାମିନ୍ କଲେଶ୍ଚାଧୁନା ।"

ଅନନ୍ତର ରାଜା ଜନାର୍ଦ୍ଦନ ସାଧୂମାନଙ୍କ ସଦନୁଷ୍ଠାନରେ ସନ୍ତୁଷ୍ଟ ହୋଇ ଦଣ୍ଡପ୍ରଣାମାନନ୍ତର ଶିଷ୍ୟତ୍ୱ ଗ୍ରହଣପୂର୍ବକ ଜିଜ୍ଞାସା କଲେ, ମହାଭାଗ ! ଯେଉଁମାନଙ୍କର ନେତ୍ର ଭବାଦୃଶ ଜ୍ଞାନୀମାନଙ୍କ ଦର୍ଶନରେ ପବିତ୍ରତା ଲାଭ କରିଅଛି, ସେହିମାନେହିଁ କୃତାର୍ଥ ଓ ପବିତ୍ର । ଯଥା :—

"କ୍ଷଣମିହ ସଜ୍ଜନସଙ୍ଗତିରେକା
ଭବତି ଭବାର୍ଣ୍ଣବତରଣେ ନୌକା ।"

ରାଜା—ମହାଭାଗ ! ଆଜି ଅମ୍ଭେ ଆପଣଙ୍କ ଦର୍ଶନରେ ଆପଣାକୁ ସାର୍ଥକଜନ୍ମା ମନେ କରି ପ୍ରାର୍ଥନା କରୁଅଛୁଁ ଯେ, ଆପଣ ଅମ୍ଭମାନଙ୍କର ଅଭିଳଷିତ ସେହି ଭବବନ୍ଧନ ପାର ହେବାର ଉପାୟ ଶୁଣାଇଁ ଅନୁଗୃହୀତ କରିବା ହେବେ ।

ଅନନ୍ତର ସାଧୁ କହିବାକୁ ଆରମ୍ଭ କଲେ, ମହାରାଜ ! ମନୁଷ୍ୟମାନଙ୍କର ମନ ପ୍ରତିନିୟତ କୌଣସି ନା କୌଣସି ଏକ ପଦାର୍ଥର ଅନୁସନ୍ଧାନ କରୁଥାଏ । ଯେତେବେଳେ ଇଷ୍ଟ ସମାଗମର ସମ୍ଭାବନା ପର୍ଯ୍ୟନ୍ତ ନ ଥାଏ, ତେତେବେଳେ ଅନନ୍ୟ ଉପାୟ ହୋଇ କେବଳ ଧର୍ମର ଆଶ୍ରୟ ନେବାକୁ ହୁଏ । ତେତେବେଳେ ମନେ ହୁଏ ଧର୍ମ ଏକମାତ୍ର ସହାୟ ଓ ଧର୍ମବଳରେ ସମସ୍ତ କାମନା ଆପେ ଆପେ ଅଧିଗତ ହୁଏ ।

ଏପରି "ଯତୋ ଧର୍ମସ୍ତତୋ ଜୟଃ" ଏହିରୂପ ଜ୍ଞାନ ଦୃଢ଼ୀଭୂତ ହୁଏ, ତେତେବେଳେ ବୁଝାଯାଏ ଯେ, ଧର୍ମ କେବଳ ଶାନ୍ତିସୁଖର ଅଦ୍ୱିତୀୟ ଉପାୟ । ଏହି ଯୁଗରେ କୃଷ୍ଣ କୃଷ୍ଣତ୍ୱ ପ୍ରାପ୍ତ ହେବା ଦିନାଦ୍ୟରୁ ସମସ୍ତ ଧର୍ମ ଓ ସମସ୍ତ କର୍ମ ବିଲୁପ୍ତ ପ୍ରାୟ, ଏଣୁ କଳିଯୁଗ ଅତି ଭୟାନକ ଓ ସମସ୍ତ ପାପର ସାଧକ ହୋଇଅଛି । ଯାହାହେଉ, ଆମ୍ଭେମାନେ ସମସ୍ତେ କଳିଯୁଗର ଲୋକ, ତେବେ ସନକ ପ୍ରଭୃତି ମହାତ୍ମାମାନେ ଜନକ ପ୍ରଭୃତି ରାଜର୍ଷିମାନଙ୍କୁ ଯାହା କିଛି ଜ୍ଞାନ, ଭକ୍ତି ଓ କର୍ମ ପ୍ରଭୃତିର ବିଷୟ ବୁଝାଇଥିଲେ, ତାହାର ତତ୍ତ୍ୱ ଆମ୍ଭେ ଯାହା କି ଦର୍ଶନ ଓ ପୁରାଣାଦିରୁ ଅବଗତ ହୋଇଅଛୁଁ, ତାହା ଆପଣମାନେ ଶ୍ରବଣ କରନ୍ତୁ । ମହାରାଜ ! ସାର କଥା ଏହି ଯେ, କଳିଯୁଗରେ ନାମହିଁ ସାର । ଏହି ବିଶାଳ ସଂସାରକାରାଗୃହରେ ଭ୍ରମଣ କରୁ କରୁ ଲୋକେ ପୁତ୍ର, ଦାରା, ଧନଧାନ୍ୟ ପ୍ରଭୃତି ପାଇବା ସହଜ, ମାତ୍ର ହରିଭକ୍ତି କାହାର ଭାଗ୍ୟରେ ଘଟିବା ସହଜ ନୁହେ । ଯଥା ଭାଗବତେ :—

"ସକଳଭୁବନମଧ୍ୟେ ନିର୍ଦ୍ଧନାସ୍ତେଽପି ଧନ୍ୟାଃ
ନିବସତି ହୃଦି ଯେଷାଂ ଶ୍ରୀହରେର୍ଭକ୍ତିରେକା ।
ହରିରପି ନିଜଲୋକଂ ସର୍ବଥାତୋବିହାୟ
ପ୍ରବିଶତି ହୃଦି ତେଷାଂ ଭକ୍ତିସୂତ୍ରୋପନଦ୍ଧଃ ।"

"ଅତୋନୃଲୋକେ ନନୁ ନାସ୍ତି କଶ୍ଚିତ୍
ତତ୍ତ୍ୱସ୍ୟ ଶୋଧାୟ କଳୌ ପବନ୍ଧଂ ।
ଅଘୌଘବିଧ୍ୱଂସକରଂ ତଥୈବ
କଥାସମାନଂ ଭୁବି ନାସ୍ତି ଗ୍ରନ୍ଥଂ ।"
"ବ୍ରହ୍ମୋଽଦ୍ୟ ତେ କମଧିକଂ ମହ୍ୟମାନମେବ
ବ୍ରହ୍ମାତ୍ମକସ୍ୟ ଭୁବି ଭାଗବତାଭିଧସ୍ୟ ।
ଯନ୍ମସ୍ତସ୍ତ୍ୱାଦିଗଦତେ ଲଭତେ ସୁବକ୍ତା
ଶ୍ରୋତାପି କୃଷ୍ଣସମତାମଲମନ୍ୟଧର୍ମୈଃ ।"

ମହାରାଜ ! ଯାହାର ଆଜ୍ଞାରେ ବ୍ରହ୍ମାଦି ଦେବତାମାନେ ସୃଷ୍ଟି-ସ୍ଥିତି ଓ ପାଳନ କରୁଅଛନ୍ତି, ଏହି ଅଖିଳବ୍ରହ୍ମାଣ୍ଡ ଯାହାଠାରୁ କିଛିମାତ୍ର ଭିନ୍ନ ନୁହେ, ଯେ କି ଏହି ସ୍ୱରୂପ, ଯାହା ବ୍ୟତିରେକେ ଏହି ଜଗତର ଚେଷ୍ଟା ଚୈତନ୍ୟାଦି ପର୍ଯ୍ୟନ୍ତ ଅସମ୍ଭବ, ସେହି କେବଳ ଭବବନ୍ଧନ ପାରର ଏକମାତ୍ର ଉପାୟ । ଯେ କି ନିର୍ଗୁଣ ଓ ନିରାକାର ହେଲେ ମଧ୍ୟ, ଲୋକାନୁଗ୍ରହ ସକାଶେ କରୁଣାମୟ ମୂର୍ତ୍ତି ଧାରଣ କରଥାନ୍ତି, ସେହି ପରିପୂର୍ଣ୍ଣ ସନାତନ ଭବବନ୍ଧନ ପାରର ଏକମାତ୍ର ଉପାୟ । ବେଦାର୍ଥବିତ୍ ଧର୍ମଜ୍ଞ ମୁନିମାନେ ବହୁବିଧ ଯଜ୍ଞଦ୍ୱାରା ଯାହାଙ୍କୁ ଯଜନ କରନ୍ତି, କର୍ମର ଫଳସ୍ୱରୂପ ସେହି ନିତ୍ୟ ନିରଞ୍ଜନ ଭକ୍ତବତ୍ସଳ ଶ୍ରୀହରି ଭବାର୍ଣ୍ଣବ ପାରର ଏକମାତ୍ର ଉପାୟ । ମହାରାଜ ! ସମସ୍ତେ ଅପରିପୂର୍ଣ୍ଣ, ସେହି ଶ୍ରୀହରି କେବଳ ପରିପୂର୍ଣ୍ଣ ସନାତନ; ତାହାଙ୍କ ଶ୍ରୀଚରଣରେ ଆଶ୍ରୟ ନେବା କର୍ତ୍ତବ୍ୟ, ସେଥିରୁ ପରତର କିଛିମାତ୍ର ନାହିଁ । ଯେଉଁମାନେ କି ପରମା ବିଦ୍ୟାର ପ୍ରଭାବରେ ଆଧ୍ୟାତ୍ମିକାଦି ଯନ୍ତ୍ରଣାମୟ ତ୍ରିତାପରୁ ଓ ମୋହକାରିଣୀ ମାୟାର ସଂସାର ଇନ୍ଦ୍ରଜାଲରୁ ମଧ୍ୟ ଜ୍ଞାନ, ଭକ୍ତି ଓ କର୍ମବଳରେ ମୁକ୍ତିଲାଭ କରିବାକୁ ସକ୍ଷମ ହୋଇଥାନ୍ତି, ସେହିମାନେ କେବଳ ପରମାନନ୍ଦମୟ, ଶ୍ରୀମନ୍ନାରାୟଣଙ୍କ ପରମପଦ ପ୍ରାପ୍ତି ବିଷୟରେ ସକ୍ଷମ ହୋଇ ପାରନ୍ତି ।

ଯେ ପର୍ଯ୍ୟନ୍ତ ଜୀବ ମାୟାର ଛଳନାରେ ବିଭ୍ରାନ୍ତ, ଅହଂ ଜ୍ଞାନରେ ଗର୍ବିତ ଓ ଜ୍ଞାନହୀନ, ଯେ ପର୍ଯ୍ୟନ୍ତ ଅନର୍ଥର କାରଣ ଭେଦାଭେଦ ଚିନ୍ତା ଓ ବନ୍ଧୁ, ପୁତ୍ର, ଶତ୍ରୁ, ମିତ୍ର ଏହିରୂପ ଅହଂକାର ତତ୍ତ୍ୱଜ୍ଞାନଦ୍ୱାରା ହୃଦୟରୁ ଅପସୃତ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ଜୀବ ପରମପଦ ଲାଭ କରିବା ପକ୍ଷରେ ଅଧିକାରୀ ନୁହେ । ଯଥା :—

ଶତ୍ରୌମିତ୍ରେ ପୁତ୍ରେ ବନ୍ଧୌ, ମା କୁରୁ ଯତ୍ନଂ ବିଗ୍ରହସନ୍ଧୌ ।
ଭବସମଚିତ୍ତଃ ସର୍ବତ୍ର ତ୍ୱଂ, ବାଞ୍ଛସ୍ୟଚିରାଦ୍ ଯଦି ବିଷ୍ଣୁତ୍ୱଂ ॥

ପ୍ରଥମରେ ଜ୍ଞାନ, ଭକ୍ତି ଓ କର୍ମର ଅଧିକାରୀ ହେବାକୁ ହେଲେ ଶାସ୍ତ୍ରାଲୋଚନାପୂର୍ବକ ଗୁଣୋପାର୍ଜନ କରିବା କର୍ତ୍ତବ୍ୟ, ଯେହେତୁ ଗୁଣ-ବଳରେ ସମସ୍ତ କାର୍ଯ୍ୟ ଆପେ ଆପେ ଅଧିଗତ ହୋଇଥାଏ । ଯଥା :—

"ଗୁଣେଷୁ ଯତ୍ନଃ ପୁରୁଷେଣ କାର୍ଯ୍ୟୋ
ନ କିଞ୍ଚିଦପ୍ରାପ୍ୟତମଂ ଗୁଣାନାଂ ।
ଗୁଣପ୍ରକର୍ଷାଦୁଡ଼ୁପେନ ଶମ୍ଭୋ—
ରଲଙ୍ଘ୍ୟମୁଚ୍ଚୈଃ ଶିରସି ଦୃଷ୍ଟମାର୍ଗଂ ॥"

ରାଜା—ମହାତ୍ମନ୍ ! ଆପଣ ଯାହାଙ୍କ ଶ୍ରୀଚରଣର ଆଶ୍ରୟ ନେବା କର୍ତ୍ତବ୍ୟ ମନେ କରିଅଛନ୍ତି, ତାହାଙ୍କ ତତ୍ତ୍ୱ ଶୁଣାଇବା ହେଲେ କୃତାର୍ଥ ହେବି । ଅନନ୍ତର ସାଧୁ କହିବାକୁ ଆରମ୍ଭ କଲେ । ମହାରାଜ ! ଈଶ୍ୱରଙ୍କ ନାମ, ରୂପ, ଶକ୍ତି ଓ ମହିମା ଅନନ୍ତ; ସୁତରାଂ ସେହି ତତ୍ତ୍ୱ ଦେବଲୋକ ପର୍ଯ୍ୟନ୍ତ ଅଗୋଚର । ସେହି ଈଶ୍ୱର ଏକ, ବହୁ, ସାକାର, ନିରାକାର, ଗୁଣାଧାର, ନିର୍ଗୁଣାଧାର, ବ୍ୟକ୍ତ, ଅବ୍ୟକ୍ତ, ବିଶ୍ୱରୂପ ଓ ବିଶ୍ୱର କାରଣ-ରୂପ;— "ଯତୋ ବାଚୋନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ" ଇତ୍ୟାଦି ଶ୍ରୁତିରୁ ପ୍ରମାଣିତ ହେଉଅଛି ଯେ, ପରମେଶ୍ୱର ବାକ୍ୟ ଓ ମନର

ଅଗୋଚର, ସୁତରାଂ ଅନିର୍ବଚନୀୟ, ଅତଏବ ସଂସାର ଅନନ୍ତକାଳରୁ ସେହି ତତ୍ତ୍ୱାନୁସନ୍ଧାନରେ ଲାଗିଅଛି, ଲାଗୁଅଛି ଓ ଲାଗିବ । ତଥାପି ଅନନ୍ତ ଚେଷ୍ଟାରେ, ଅନନ୍ତକାଳରେ ତାହାର ଅନନ୍ତତ୍ୱ ଧାରଣା କରି ପାରି ନାହିଁ, ପାରୁ ନାହିଁ ଓ ପାରିବ ନାହିଁ । ସେହି ମହିମା ସ୍ୱୟଂ ବିଶ୍ୱବିଧାତାର କୋଟି କଳ୍ପ କଳ୍ପନାର ଅସାଧ୍ୟ । ସେହି ତତ୍ତ୍ୱଜ୍ଞାନ ଲାଭ କରିବା କୋଶେ ଅତି ଅଳ୍ପ ଲୋକଙ୍କ ମନ ପ୍ରଧାବିତ ହୁଏ । ଯଥା ଗୀତା:

"ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ୟତତି ସିଦ୍ଧୟେ।
ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ ।"

ମହାରାଜ ! ସୂର୍ଯ୍ୟମଣ୍ଡଳ ଯେପ୍ରକାର ପରିଦୃଶ୍ୟମାନ ପୃଥିବୀକୁ ଆଲୋକରଶ୍ମିରେ ଆଲୋକିତ କରେ, ସେହିପରି ଆଧ୍ୟାତ୍ମିକ ଆଲୋକର ଆକରସ୍ୱରୂପ ପରମେଶ୍ୱର ମନୁଷ୍ୟମାନଙ୍କ ହୃଦୟରେ ଜ୍ଞାନାଲୋକ ବିସ୍ତାର କରି ଅନ୍ତଃକରଣକୁ ସତ୍‌ପଥରେ ପରିଚାଳିତ କରିଥାନ୍ତି । ଆଉ ମଧ୍ୟ ଯେପରି ସୂର୍ଯ୍ୟମଣ୍ଡଳ ମେଘଦ୍ୱାରା ଲୁକ୍କାୟିତ ହେଲେ ପୃଥିବୀ ଅନ୍ଧକାରରେ ଆବୃତ ହୋଇ ପଡେ, ସେହିପରି ସୁପ୍ରବୃତ୍ତି କୁପ୍ରବୃତ୍ତିଦ୍ୱାରା ଆବୃତ ହେଲେ ହୃଦୟ ଅଜ୍ଞାନାନ୍ଧକାରରେ ସମାଚ୍ଛନ୍ନ ହୁଏ, ତେତେବେଳେ କୁପ୍ରବୃତ୍ତିସମୂହ ହୃଦୟକ୍ଷେତ୍ର ଅଧିକାର କରି ହୃଦୟରୁ ଧର୍ମପ୍ରବୃତ୍ତି ଅପହୃତ କରି ପକାଏ । ଯାହାହେଉ, ବିକାର ହେତୁ ଉପସ୍ଥିତ ହେଲେ ମନୁଷ୍ୟମାନଙ୍କ ହୃଦୟ ବିକୃତ ହୋଇଥାଏ, ମାତ୍ର ଈଶ୍ୱରଙ୍କଠାରେ କୌଣସି ପ୍ରକାର ବିକାର ନାହିଁ । ଯଥା ପାତଞ୍ଜଳ ସୂତ୍ର :—"କ୍ଲେଶକର୍ମ ବିପାକାଶୟୈରପରାମୃଷ୍ଟଃ ପୁରୁଷବିଶେଷ ଈଶ୍ୱରଃ ।" "ତତ୍ର ନିରତିଶୟଂ ସର୍ବଜ୍ଞ ବୀଜଂ ।" "ସଃ ପୂର୍ବେଷାମପି ଗୁରୁଃ କାଲେନାବଚ୍ଛେଦାତ୍ ।" ଅର୍ଥାତ୍ ଯେ କି କ୍ଳେଶ, କର୍ମ, ବିପାକ ଓ ଆଶୟରୁ ବିଯୁକ୍ତ, ସେହି କେବଳ ଈଶ୍ୱରପଦବାଚ୍ୟ, ତାଙ୍କର ନିରତିଶୟ ଜ୍ଞାନ ଥିବା ହେତୁ ସେହି ପରମେଶ୍ୱର

ପ୍ରଥମ ପରିଚ୍ଛେଦ

ସର୍ବାକ୍ଷରର ଆଧାରସ୍ୱରୂପ, ଈଶ୍ୱର ପୂର୍ବ ପୂର୍ବବର୍ତ୍ତୀ ସମସ୍ତଙ୍କର ଗୁରୁ, କାରଣ କାଳଦ୍ୱାରା ତାହାଙ୍କ ପରିଚୟ ନିର୍ଣ୍ଣୟ ହୋଇ ପାରେ ନାହିଁ । ଯଥା ମନୁ :—

"ପ୍ରଶାସିତାରଂ ସର୍ବେଷାଂ ସମଣୋରପି ।
ରୁକ୍ମାଭଂ ସ୍ୱପ୍ନଧିଗମ୍ୟଂ ବିଦ୍ୟା ତଂ ପୁରୁଷଂ ପରଂ ।"
"ଏକମେକେ ବଦନ୍ତ୍ୟଗ୍ନିଂ ମନୁମନ୍ୟେ ପ୍ରଜାପତିଂ ।
ଇନ୍ଦ୍ରମେକେ ପରେ ପ୍ରାଣମପରେ ବ୍ରହ୍ମ ଶାଶ୍ୱତଂ ।"

ଅର୍ଥାତ୍ ସମସ୍ତର ଶାସ୍ତା ଅଣୁ ଅପେକ୍ଷା ଅଣୁ, ପ୍ରଭାସ୍ୱରୂପ ସ୍ୱପ୍ନଧୀଗମ୍ୟ ସେହି ପରମ ପୁରୁଷଙ୍କୁ କେହି ଅଗ୍ନି, କେହି ପ୍ରଜାପତି କେହି ପ୍ରାଣ, କେହି ମନ ଓ କେହି ବା ସଚ୍ଚିଦାନନ୍ଦମୟ ବ୍ରହ୍ମରୂପରେ ଉପାସନା କରଥାନ୍ତି । ତନ୍ତ୍ର ଶ୍ରୁତି —

"ଅଣୋରଣୀୟାନ୍ ମହତୋ ମହୀୟାନ୍ ।"

ଅର୍ଥାତ୍ ଈଶ୍ୱର ଅଣୁ ଅପେକ୍ଷା ଅଣୁ ଓ ଆକାଶ ଅପେକ୍ଷା ବଡ଼. ସୁତରାଂ ଅନିର୍ବାଚ୍ୟ ।

ମହାରାଜ ! ବେଦ, ଉପନିଷଦ୍, ଦର୍ଶନ ଓ ସଂହିତା ପ୍ରଭୃତି ଅନୁସନ୍ଧାନ କରି ଦେଖିଲେ ଈଶ୍ୱର ଏକରୁ ଦ୍ୱିତୀୟ ନୁହେ ବୋଲି ସ୍ଥିର ହୋଇଥାଏ, ଯାହାଙ୍କ ନାନା ରୂପ ଓ ନାନା ନାମ ପୁରାଣାଦିରେ ବର୍ଣ୍ଣିତ ହୋଇଅଛି, ତାହା ମଧ୍ୟ ଏକେଶ୍ୱରବାଦରୁ ଭିନ୍ନ ନୁହେ । ଯଥା ଋଗ୍‌ବେଦ—"ସୁପର୍ଣ୍ଣଂ ବିପ୍ରାଃ କବୟୋ ବଚୋଭିରେକଂ ସନ୍ତଂ ବହୁଧାଃ କଳ୍ପୟନ୍ତି ।" ଅର୍ଥାତ୍ ଯେ ପ୍ରାଜ୍ଞ ପଣ୍ଡିତମାନେ ବୁଦ୍ଧିର କଳ୍ପନାଦ୍ୱାରା ଏକମାତ୍ର ପକ୍ଷିର ଅନେକ ପ୍ରକାର ବର୍ଣ୍ଣନା କରଥାନ୍ତି, ସେହି ପ୍ରକାର ଈଶ୍ୱର ନାନା ନାମ ଓ ନାନା ରୂପରେ କଳ୍ପିତ ହୋଇଅଛନ୍ତି । ମହାରାଜ ! ମନୁଷ୍ୟର ଧ୍ୟାନ ଧାରଣା ଶକ୍ତି ଅନୁସାରେ ସର୍ବବ୍ୟାପୀ ସର୍ବ-

ସ୍ୱରୂପ ପରମେଶ୍ୱରଙ୍କର ନାନା ନାମ ଓ ନାନା ରୂପ ବୋଲି କଳ୍ପନା ହୋଇଥାଏ, ବସ୍ତୁତଃ ଈଶ୍ୱର ଏକ । ତଥା ଶ୍ରୁତି : "ଏକମେବାଦ୍ୱିତୀୟଂ ବ୍ରହ୍ମ ନେହନାନାସ୍ତି କିଞ୍ଚନ ।" ସାର କଥା ଏହି ଯେ, ଈଶ୍ୱର ଏକ, ଧର୍ମ ଓ ସମ୍ପ୍ରଦାୟଭେଦରେ ଯାହା କ ନାନା ନାମ, ତାହା କଳ୍ପନା ମାତ୍ର । ଯଥା:—

"ୟଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନୋ
ବୌଦ୍ଧାଃ ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ॥
ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ
ସୋଽୟଂ ବୋ ବିଦଧାତୁ ବାଞ୍ଛିତଫଳଂ ତ୍ରୈଲୋକ୍ୟନାଥୋ ହରିଃ ।"

ଅତଏବ ସେହି ପରମେଶ୍ୱରଙ୍କୁ କେହି ଶିବ, କେହି ବିଷ୍ଣୁ, କେହି କୃଷ୍ଣ କେହି ଗଡ୍, କେହି ବା ଖୋଦାରୂପେ ଉପାସନା କରିଥାନ୍ତି । ଯାହାହେଉ ସେ ତତ୍ତ୍ୱ ଦୁରଧିଗମ୍ୟ, ଏଣୁ ସେ ନିଜେ କୃପା କରି ନ ଜଣାଇଲେ ତାଙ୍କୁ ଜାଣିବାର ଉପାୟାନ୍ତର ନାହିଁ । ଯାହା କିଛି ନାନା ନାମ ଓ ନାନା ରୂପରେ ପ୍ରତୀତ ହେଉଅଛି, ସେ କେବଳ ଈଶ୍ୱରଙ୍କର ନାମ ଓ ଈଶ୍ୱରଙ୍କ ରୂପ; ଅନ୍ୟ କିଛି ନୁହେ । ସୁତରାଂ ଯେ ତାହାଙ୍କୁ ଯେଉଁ ନାମରେ ଡାକେ ବା ଯେଉଁ ରୂପରେ ଦେଖିବାକୁ ଇଚ୍ଛା କରେ, ସେ ତାହା ନିକଟରେ ସେହି ନାମ ସେହି ରୂପରେ ପ୍ରକାଶମାନ ଥାନ୍ତି । ମହାରାଜ ! "ନ ସ ପୁନରାବର୍ତ୍ତତେ, ନ ସ ପୁନରାବର୍ତ୍ତତେ ।" "ଯଦ୍ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ" ଇତ୍ୟାଦି ଶ୍ରୁତି ଓ ସ୍ମୃତି ପ୍ରଭୃତିରୁ ପ୍ରମାଣିତ ହେଉଅଛି ଯେ, ଯେଉଁମାନେ କ ଯେପର୍ଯ୍ୟନ୍ତ ପାଇ-ଅଛନ୍ତି, ସେମାନେ ଅଉ ପୁନରାୟ ଫେରି ନାହାନ୍ତି । ଏଣୁ ସେହି ତତ୍ତ୍ୱ ସମସ୍ତଙ୍କୁ ଅଗୋଚର । ଯାହାହେଉ, ଈଶ୍ୱର ଜଗତର କର୍ତ୍ତା, ଏଥିରେ କୌଣସି ପ୍ରକାର ସନ୍ଦେହ ବା ଭ୍ରମ କିଛି ମାତ୍ର ନାହିଁ । ଯଥା ନ୍ୟାୟ

ଦର୍ଶନେ "ଈଶ୍ୱରଃ କାରଣଂ ପୁରୁଷ କର୍ମଫଲାଦର୍ଶନାତ୍ ।" ଅର୍ଥାତ୍ ସେମାନଙ୍କର ସିଦ୍ଧାନ୍ତ ଏହି ଯେ, କାର୍ଯ୍ୟରୁ କାରଣର ଅନୁମାନ କରାଯାଏ । ଯଥା:—

କ୍ଷିତ୍ୟଙ୍କୁରାଦିକଂ ସକର୍ତ୍ତୃକଂ କାର୍ଯ୍ୟତ୍ୱାତ୍ ଘଟବତ୍
ଯଦ୍ ଯତ୍ କାର୍ଯ୍ୟଂ ତତ୍ ତତ୍ କର୍ତ୍ତୃତ୍ୱାଧୀନଂ ଯଥା ଘଟଃ ।

ଅର୍ଥାତ୍ ଯେପରି କି ଘଟ ଓ ପଟ ପ୍ରଭୃତିର କର୍ତ୍ତା କୁମ୍ଭକାର ଓ ତନ୍ତୁବାୟାଦିମାନେ ଅଟନ୍ତି, ସେହିପରି ଯେ କି ସମସ୍ତ ଜଗତର କର୍ତ୍ତା, ସେହି କେବଳ ଈଶ୍ୱର; ଯେହେତୁ ମନୁଷ୍ୟକୃତ କାର୍ଯ୍ୟ ଫଳର ଅଭାବ ଘଟୁଥାଏ । ବେଦାନ୍ତ ଦର୍ଶନ ଯଥା:—"ଜନ୍ମାଦ୍ୟସ୍ୟ ଯତଃ ।" ଭାଗବତେ ଯଥା:—

"ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍
ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୂରୟଃ ।
ତେଜୋ ବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି ।"

ଇତ୍ୟାଦି ପ୍ରମାଣଦ୍ୱାରା ଈଶ୍ୱରଙ୍କର ଜଗତ୍‌କର୍ତ୍ତୃତ୍ୱ ଓ ସ୍ୱରୂପତତ୍ତ୍ୱ ପ୍ରକାଶିତ ହୋଇଅଛି । ଅପର ପ୍ରମାଣ ଉପନିଷଦାଦି । ଯଥା:—

"ଯଥୋର୍ଣ୍ଣନାଭିଃ ସୃଜତେ ଗୃହ୍ଣତେ ଚ,
ଯଥା ପୃଥିବ୍ୟାମୋଷଧୟଃ ସମ୍ଭବନ୍ତି ।
ଯଥା ସତଃ ପୁରୁଷାତ୍ କେଶଲୋମାନି,
ତଥା କ୍ଷରାତ୍ ସମ୍ଭବତୀହ ବିଶ୍ୱଂ ।"

ଅର୍ଥାତ୍ ଈଶ୍ୱର ଜଗଦୁତ୍ପତ୍ତି ଓ ବିନାଶର ହେତୁ ଏବଂ ସମସ୍ତ ପଦାର୍ଥର ପ୍ରକାଶକ ଓ ସ୍ୱୟଂ ପ୍ରକାଶ୍ୟ । ଯଥା, ଗୀତା—

"ଏତାନ୍ୟଶେଷରୂପସ୍ୟ ତସ୍ୟ ରୂପାଣି ପାର୍ଥିବ ।
ତତସ୍ତଚ୍ଛକ୍ତିଯୋଗେନ ବ୍ୟାପ୍ତାନି ନଭସୋ ଯଥା ।"

ଅର୍ଥାତ୍ ଏହି ସମସ୍ତ ଭଗବାନଙ୍କର ଅଶେଷରୂପ, ଯେହେତୁ ଆକାଶଠାରୁ ବ୍ୟାପ୍ତ ତାହାଙ୍କ ଶକ୍ତିଦ୍ୱାରା ବ୍ୟାପ୍ତ ହୋଇଅଛି । ଯାହାହେଉ ମନୁଷ୍ୟର ସୀମାବଦ୍ଧ ଜ୍ଞାନରେ ତାହାର ବିଶ୍ୱ ବିଶ୍ୱରୂପ ଧାରଣାର ଅଗତ ବୋଲି ପ୍ରତିମାଦି ପୂଜାର ବ୍ୟବସ୍ଥା ହୋଇଥାଏ । ଭାଗବତେ ଯଥା—

"ଅର୍ଚ୍ଚାଦାବର୍ଚ୍ଚୟେତ୍ତାବଦୀଶ୍ୱରଂ ମାଂ ସ୍ୱକର୍ମକୃତ୍ ।
ଯାବନ୍ନ ବେଦ ସ୍ୱହୃଦି ସର୍ବଭୂତେଷ୍ୱବସ୍ଥିତଂ ।"
"ଅଥ ମାଂ ସର୍ବଭୂତେଷୁ ଭୂତାତ୍ମାନଂ କୃତାଲୟଂ ।
ଅର୍ହୟେଦ୍ଦାନମାନାଭ୍ୟାଂ ମୈତ୍ର୍ୟାଭିନ୍ନେନ ଚକ୍ଷୁଷା ।"

ଅର୍ଥାତ୍ ମନୁଷ୍ୟ ଯେ ପର୍ଯ୍ୟନ୍ତ ହୃଦୟ ମଧ୍ୟରେ ଆମ୍ଭେ ସର୍ବଭୂତରେ ଅବସ୍ଥିତ ଅଛୁ ବୋଲି ଜାଣି ନ ପାରେ, ସେ ପର୍ଯ୍ୟନ୍ତ କର୍ମନିଷ୍ଠ ହୋଇ ଯେ କୌଣସି ଭାବରେ ପୂଜା କରିବା କର୍ତ୍ତବ୍ୟ । ଆଉ ମଧ୍ୟ ଆମ୍ଭଙ୍କୁ ସର୍ବଭୂତାତ୍ମା ଓ ସର୍ବଭୂତରେ ଅବସ୍ଥିତ ଜାଣି ସୁଦ୍ଧା ଦାନ ମାନ ଓ ସମଦର୍ଶିତାଦ୍ୱାରା ଅର୍ଚ୍ଚନା କରିବା ମନୁଷ୍ୟ ମାତ୍ରର କର୍ତ୍ତବ୍ୟ ।

ମହାତ୍ମନ ! "ଦ୍ୟାବାଭୂମୀଜନୟନ୍ ଦେବ ଏକ ଆସ୍ତେ ବିଶ୍ୱସ୍ୟ କର୍ତ୍ତା ଭୁବନସ୍ୟ ଗୋପ୍ତା ।"

"ଯତଃ ସର୍ବାଣି ଭୂତାନି ଭବନ୍ତ୍ୟାଦି ଯୁଗାଗମେ" ଇତ୍ୟାଦି ଶ୍ରୁତି ଓ ସ୍ମୃତି ପ୍ରଭୃତିରୁ ଏବଂ "କାର୍ଯ୍ୟାତ୍ କାରଣମନୁମୀୟତେ" ଇତ୍ୟାଦି ଅନୁମାନିକ ଯୁକ୍ତି ବଳରୁ ମଧ୍ୟ ପ୍ରମାଣିତ ହେଉଅଛି ଯେ, କେବଳ ଈଶ୍ୱର ଜଗତର କର୍ତ୍ତା ।

ଅନନ୍ତର ରାଜା ଜନାର୍ଦ୍ଦନ କହିବାକୁ ଆରମ୍ଭ କଲେ, ମହାତ୍ମନ୍ ! ପ୍ରଥମ ସୃଷ୍ଟି କପରି ହେଲା, ତାହାର ବୃତ୍ତାନ୍ତ ଶୁଣାଇବ ହେଲେ ଅନୁଗୃହୀତ ହେବି ।

ସାଧୁ ମହାରାଜ ! ସୃଷ୍ଟି ସମ୍ବନ୍ଧରେ ଅନେକ ପ୍ରକାର ମତଭେଦ ଅଛି, ମାତ୍ର "ଅହଂ ବହୁସ୍ୟାଂ ପ୍ରଜାୟେୟ" ଇତ୍ୟାଦି ଶ୍ରୁତିରୁ ପ୍ରମାଣିତ ହୋଇଅଛି ଯେ, ଆଦିକାଳରେ ସମସ୍ତ ଶୂନ୍ୟମୟ ଥିଲା । ଏହା ପରେ ସ୍ରଷ୍ଟାଙ୍କ ଇଚ୍ଛାକ୍ରମେ ଦୃଷ୍ଟପଦାର୍ଥମାନ ଉତ୍ପନ୍ନ ହେଲା । ଅତଏବ ଅବିଦ୍ୟ-ମାନରୁ ବିଦ୍ୟମାନର ସୃଷ୍ଟି, ଏଣୁ ବିଦ୍ୟମାନ ପଦାର୍ଥର ବିନାଶ ନିଶ୍ଚୟ । ଅବିଦ୍ୟମାନରୁ ବିଦ୍ୟମାନର ସୃଷ୍ଟି ପ୍ରସଙ୍ଗରେ ସତ୍ ପଦାର୍ଥରୁ ଅସତ୍ ପଦାର୍ଥର ଉତ୍ପତ୍ତି ସ୍ଥିର ହୋଇଅଛି । ଏଠାରେ "ନା ବସ୍ତୁନୋ ବସ୍ତୁସିଦ୍ଧିଃ" ପ୍ରଭୃତି ସାଂଖ୍ୟସୂତ୍ରରେ ଏବଂ "ନାସତୋ ବିଦ୍ୟତେ ଭାବୋ ନା ଭାବୋ ବିଦ୍ୟତେ ସତଃ" ଇତ୍ୟାଦି ଗୀତା ବାକ୍ୟରେ ମଧ୍ୟ ତାହାର ପ୍ରତିବାଦ ଦେଖାଯାଏ । ବୌଦ୍ଧ-ଦାର୍ଶନିକ ମତରେ ଅଭାବ ଅର୍ଥାତ୍ ଅସତ୍ ଉତ୍ପତ୍ତି ଅର୍ଥାତ୍ ସତର ମୂଳ । ଦୃଷ୍ଟାନ୍ତ-- ବୀଜ ଧ୍ୱଂସ ନ ହେଲେ ବୃକ୍ଷର ଉତ୍ପତ୍ତି ହୁଏ ନାହିଁ, କିନ୍ତୁ ସାଂଖ୍ୟମତରେ ଏହା ବିପରୀତ, ଅଭାବରୁ କାର୍ଯ୍ୟର ଉତ୍ପତ୍ତି ହେଲେ ଓ ବୀଜର ସହିତ କୌଣସି ସମ୍ବନ୍ଧ ନ ରହିଲେ ବିନା ବୀଜରେ ଅଙ୍କୁର ଆପେ ଆପେ ଉତ୍ପନ୍ନ ହୁଅନ୍ତା, କିନ୍ତୁ ତାହା ହୁଏ ନାହିଁ, ମାତ୍ର ବୀଜକୁ ନିର୍ଭର କରି ଅଙ୍କୁର ଉତ୍ପନ୍ନ ହୋଇଥାଏ । ଅତଏବ ସାଂଖ୍ୟ-କାର କହନ୍ତି କି, କାର୍ଯ୍ୟର ସହିତ କାରଣର ସମ୍ବନ୍ଧ ସ୍ୱୀକାର କରିବା କର୍ତ୍ତବ୍ୟ । ସୁତରାଂ କାରଣ ସତ୍, କିନ୍ତୁ କାର୍ଯ୍ୟରେ କାରଣ ସୂକ୍ଷ୍ମରୂପେ ଅବସ୍ଥିତ ହେବାରୁ ଅନଭିଜ୍ଞ ବୋଲି କେହି ତାହାକୁ ଦେଖି ପାରେ ନାହିଁ । ଯେପରି ହେଉ ତାହା କେତେବେଳେ ଅସତ୍ ନୁହେଁ, ଯାହା କି ଅସତ୍ ତାହା ନିଶ୍ଚୟହିଁ ଅସତ୍, ଅସତ୍ ପଦାର୍ଥକୁ କେହି ସତ୍ କରି ନ ପାରେ, ଅତଏବ ଘୋଡ଼ା ପିଟାଇ ଗଧ କରି ଯାଇ ନ ପାରେ । ଯଦି ବୋଲ,

ଉତ୍ପତ୍ତିର ପୂର୍ବେ କାର୍ଯ୍ୟ ଯଦି ବର୍ତ୍ତମାନ ଥାଏ, ତେବେ ତାର ଅ ୀ ପରେ ଉତ୍ପତ୍ତି କଣ ? ତଦୁତ୍ତରରେ ବୋଲାଯାଏ, ପ୍ରଥମ ଅଭିବ୍ୟକ୍ତିର ନାମ ଉତ୍ପତ୍ତି । ଯେପରି କି ଧାନ୍ୟ ମଧ୍ୟରେ ତଣ୍ଡୁଳ ବିଦ୍ୟମାନ ଥାଏ, ତାହା ପରେ ଅବଘାତ କଲେ ଧାନ୍ୟରୁ ତଣ୍ଡୁଳ ବାହାର ହୁଏ, ତଣ୍ଡୁଳର ଏହି କେବଳ ଉତ୍ପତ୍ତି । ଏହିରୂପେ କାର୍ଯ୍ୟ ମାତ୍ରର ଉତ୍ପତ୍ତି ହୋଇଥାଏ । କାର୍ଯ୍ୟ ଯେ ଉତ୍ପତ୍ତିର ପୂର୍ବେ ବର୍ତ୍ତମାନ, ଏହି ବିଷୟରେ ଦ୍ୱିତୀୟ ଯୁକ୍ତି । ଯଥା—କାର୍ଯ୍ୟର ସହିତ କାରଣର ଗୋଟିଏ ସମ୍ବନ୍ଧ ଏପରି ମାନିବାକୁ ହେବ ଯେ, କାର୍ଯ୍ୟ ଉତ୍ପତ୍ତିର ପୂର୍ବେ ଯେ କି ବର୍ତ୍ତମାନ, ନତୁବା ମୃତ୍ତିକାରୂପ କାରଣରୁ ବସ୍ତ୍ରରୂପ କାର୍ଯ୍ୟର ଉତ୍ପତ୍ତି ଓ ସୂତ୍ରରୂପ କାରଣରୁ ଘଟରୂପ କାର୍ଯ୍ୟର ଉତ୍ପତ୍ତି ନୁହେ ବା କାହିଁକି ? ଅତଏବ କାର୍ଯ୍ୟର ସହିତ କାରଣର ଚିରନ୍ତନ ସମ୍ବନ୍ଧ ସ୍ୱୀକାର କରାଗଲେ ଏହି ଆପତ୍ତି ଘଟେ ନାହିଁ । କାହିଁକି ଯେ କାରଣ ଯେ କାର୍ଯ୍ୟର ସହିତ ସମ୍ବନ୍ଧଯୁକ୍ତ, ସେହି କାରଣ ସେହି କାର୍ଯ୍ୟର ଉତ୍ପାଦକ ହୁଏ । ମାତ୍ର କୌଣସି କାରଣ ସମ୍ବନ୍ଧଶୂନ୍ୟ କାର୍ଯ୍ୟର ଉତ୍ପାଦକ ହୁଏ ନାହିଁ । ସୁତରାଂ ମୃତ୍ତିକା ଘଟର ସହିତ ସମ୍ବନ୍ଧ-ଯୁକ୍ତ, କିନ୍ତୁ ବସ୍ତ୍ରର ସହିତ ସମ୍ବନ୍ଧଯୁକ୍ତ ନୁହେ । ଅତଏବ ମୃତ୍ତିକାରୂପ କାରଣରୁ ଘଟରୂପ କାର୍ଯ୍ୟର ଉତ୍ପତ୍ତି ହୁଏ, କିନ୍ତୁ ବସ୍ତ୍ରର ଉତ୍ପତ୍ତି ହୁଏ ନାହିଁ । ତେବେ କହାଗଲା ଯେ, ଘଟ ଯଦି ଉତ୍ପତ୍ତିର ପୂର୍ବେ ଅସତ୍ ହୁଏ, ତାହାହେଲେ ସତ୍ମୃତ୍ତିକାର ସହିତ ତାହାର ସମ୍ବନ୍ଧ ଥାଏ ନାହିଁ ।ଅତଏବ କାର୍ଯ୍ୟ ସତ୍—କାରଣ ମଧ୍ୟ ସତ୍ । ପୂର୍ବୋକ୍ତ ଯୁକ୍ତିରେ ସାଙ୍ଖ୍ୟତତ୍ତ୍ୱ-କୌମୁଦୀର ପ୍ରମାଣ । ଯଥା :—

"ଅସଦକରଣାଦୁପାଦାନଗ୍ରହଣାତ୍ ସର୍ବସମ୍ଭବାଭାବାତ୍ ।
ଶକ୍ତସ୍ୟ ଶକ୍ୟକରଣାତ୍ କାରଣାଭାବାଚ ସତ୍କାର୍ଯ୍ୟଂ ॥"

ବୈଶେଷିକ ଓ ନୈୟାୟିକମାନେ ସତ୍ୟରୁ ଅସତ୍ୟର ଉତ୍ପତ୍ତି ନିର୍ଦ୍ଦେଶ କରଅଛନ୍ତି । ସେମାନଙ୍କ ମତରେ ପରମାଣୁ ସତ୍ ଅର୍ଥାତ୍ ନିତ୍ୟ ।

ପରିଦୃଶ୍ୟମାନ ଵସ୍ତୁ ଅସତ୍ ଅର୍ଥାତ୍ ଅନିତ୍ୟ । ବୈଶେଷିକ ଓ ନୈୟାୟିକମାନେ ସତ୍ ପରମାଣୁରୁ ଅସତ୍ ଜଗତର ଉତ୍ପତ୍ତି ସ୍ଥିର କରିଅଛନ୍ତି । ଆଉ ମଧ୍ୟ ବୈଦାନ୍ତିକମାନେ ଜଗନ୍ମିଥ୍ୟା ଓ ବ୍ରହ୍ମ ସତ୍ୟ ବୋଲି ସ୍ୱୀକାର କରନ୍ତି, ତହିଁରେ ମଧ୍ୟ ପୂର୍ବୋକ୍ତ ଯୁକ୍ତିବଳରେ ସାଂଖ୍ୟକାର ପ୍ରତିବାଦ କରନ୍ତି । ମହାରାଜ, ସାଂଖ୍ୟମତରେ ପୁରୁଷ ଓ ପ୍ରକୃତିର ମିଳନରେ ଯେଉଁ ବିକୃତି ଘଟେ, ତାହାର ନାମ ସୃଷ୍ଟି । ଯେପରି ତିଳରୁ ତେଲ, ଦୁଗ୍ଧରୁ ଦଧି ଓ ଦଧିରୁ ଘୃତ ଉତ୍ପନ୍ନ ହୁଏ, ସେହିପରି ପ୍ରକୃତିଠାରୁ ସଂସାର ଉତ୍ପନ୍ନ ହୋଇଅଛି । ସାଂଖ୍ୟ ସୂତ୍ର ଯଥା—

"ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ପ୍ରକୃତିଃ ।"
"ପ୍ରକୃତେର୍ମହାନ୍ ମହତୋଽହଂକାରଃ ।"
"ଅହଂକାରାତ୍ ପଞ୍ଚତନ୍ମାତ୍ରାଣି ଉଭୟମିନ୍ଦ୍ରିୟଂ ମନଃ ।"
"ତନ୍ମାତ୍ରେଭ୍ୟଃ ସ୍ଥୂଳଭୂତାନି ।"

ଅର୍ଥାତ୍ ସତ୍ତ୍ୱ, ରଜ, ତମର ଯେ ସାମ୍ୟାବସ୍ଥା, ତାହାର ନାମ ପ୍ରକୃତି । ପ୍ରକୃତିରୁ ମହାନ୍, ମହତରୁ ଅହଙ୍କାର, ଅହଙ୍କାରରୁ ପଞ୍ଚତନ୍ମାତ୍ର, ପଞ୍ଚତନ୍ମାତ୍ରରୁ ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ମନ ପଞ୍ଚତନ୍ମାତ୍ରରୁ ପଞ୍ଚସ୍ଥୂଳଭୂତ ଉତ୍ପନ୍ନ ହୁଏ । ଏହି ସାଂଖ୍ୟମତରେ ପଞ୍ଚତନ୍ମାତ୍ର ଅର୍ଥାତ୍ ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦରୁ ପଞ୍ଚଭୂତ ଅର୍ଥାତ୍ ତେଜ, ଜଳ, ପୃଥିବୀ, ବାୟୁ ଓ ଆକାଶ ଉତ୍ପନ୍ନ ହୋଇଅଛି । ଏହା କେବଳ ମୂଳତତ୍ତ୍ୱ । ତାହାର ପର ପୁରୁଷ ଓ ପ୍ରକୃତିର ସମନ୍ୱୟରେ ଆଉ ଆଉ ଯାହା କି ସ୍ଥୂଳ ସାମଗ୍ରୀ ଉତ୍ପନ୍ନ ହୋଇଥାଏ, ତାହାହିଁ କ୍ରମବିକାଶ । ନୈସର୍ଗିକ ନିୟମରେ ଏକର ସହିତ ଅନ୍ୟର ସଂଯୋଗ ବିଯୋଗରେ ସୃଷ୍ଟିର କ୍ରମବିକାଶ ଘଟିଥାଏ । ଅବିଦ୍ୟମାନରୁ ବିଦ୍ୟମାନର ସୃଷ୍ଟିପ୍ରସଙ୍ଗରେ ସ୍ଥିର ହୋଇଅଛି ଯେ, ସୃଷ୍ଟିର ପୂର୍ବେ ଏକ ପରମେଶ୍ୱର ବିଦ୍ୟମାନ ଥିଲେ, ତାଙ୍କର

ନଶ୍ୱାସ ପ୍ରଶ୍ୱାସରୂପ ବାୟୁ ପ୍ରବହମାନ ହେଉଥିଲା, ତେତେବେଳେ ଚନ୍ଦ୍ର, ସୂର୍ଯ୍ୟ, ଦିବା ଓ ରାତ୍ରି ପ୍ରଭୃତି କିଛି ନ ଥିଲା, କେବଳ ଅନ୍ଧକାର ଉପରେ ଅନ୍ଧକାର ଘନୀଭୂତ ହୋଇଥିଲା, ତେତେବେଳେ ପରମାତ୍ମା ଅବିଦ୍ୟାମାନରେ ସମାଚ୍ଛନ୍ନ ଥିଲେ । ତାହାଙ୍କ ତପଃପ୍ରଭାବରେ ମନର ଉପରେ କାମର ପ୍ରଭାବ ହେଲା । ତାହାହିଁ ଉତ୍ପତ୍ତିର ପ୍ରଥମ କାରଣ, ଏଣୁ ଅବିଦ୍ୟମାନରୁ ବିଦ୍ୟମାନର ଉତ୍ପତ୍ତି । ମହାରାଜ ! ସାମବେଦୀୟ ସନ୍ଧ୍ୟାରେ ସୃଷ୍ଟିର ପ୍ରକ୍ରିୟା ଯଥା:—"ଓଁ ଋତଞ୍ଚ ସତ୍ୟଞ୍ଚାଭିଦ୍ଧାତ୍ ତପସୋଽଧ୍ୟଜାୟତ ତତୋ ରାତ୍ର୍ୟଜାୟତ ତତଃ ସମୁଦ୍ରୋଽର୍ଣ୍ଣବଃ ସମୁଦ୍ରାଦର୍ଣ୍ଣବା ଦଧିସଂବତ୍ସରୋଽଜାୟତ । ଅହୋରାତ୍ରାଣି ବିଦଧତ୍ ବିଶ୍ୱସ୍ୟ ମିଷତୋବଶୀ ସୂର୍ଯ୍ୟଚନ୍ଦ୍ରମସୌ ଧାତାଯଥାପୂର୍ବମକଳ୍ପୟତ୍ ଦିବଂ ଚ ପୃଥିବୀଂ ଚାନ୍ତରୀକ୍ଷମଥୋସ୍ୱଃ ।" ଅର୍ଥାତ୍ ମହାପ୍ରଳୟ ସମୟରେ ଏକମାତ୍ର ପରଂବ୍ରହ୍ମ ବିଦ୍ୟମାନ ଥିଲେ, ଅନ୍ୟ ସମସ୍ତ ଅନ୍ଧକାରାଚ୍ଛନ୍ନ ଥିଲା । ସୃଷ୍ଟି ପୂର୍ବରେ ତପୋବଳରେ ଜଳପୂର୍ଣ୍ଣ ଅର୍ଣ୍ଣବ ଉତ୍ପନ୍ନ ହେଲା । ସେହି ଅର୍ଣ୍ଣବରୁ ଜଗତ୍ ସୃଷ୍ଟିସମର୍ଥ ବିଧାତା ଜାତ ହେଲେ । ସେ କ୍ରମେ ସୂର୍ଯ୍ୟ ଓ ଚନ୍ଦ୍ର ସୃଷ୍ଟି କଲେ, ତହିଁରୁ ଦିବାରାତ୍ରି ମାସ ଓ ବର୍ଷ ପ୍ରଭୃତି ଜାତ ହେଲା । ସୃଷ୍ଟି ସମ୍ବନ୍ଧରେ ମନୁ ଯଥା:—

"ଆସୀଦିଦଂ ତମୋଭୂତମପ୍ରଜ୍ଞାତମଲକ୍ଷଣଂ ।
ଅପ୍ରତର୍କ୍ୟମବିଜ୍ଞେୟଂ ପ୍ରସୁପ୍ତମିବ ସର୍ବତଃ ॥"

ଅର୍ଥାତ୍ ସଂସାର ତମସାଚ୍ଛନ୍ନ ଥିଲା, ସ୍ୱୟମ୍ଭୂ ମହାଭୂତାଦି ଚତୁର୍ବିଂଶତି ତତ୍ତ୍ୱରେ ପ୍ରବୃତ୍ତବୀର୍ଯ୍ୟ ହୋଇ କ୍ରମେ ସଂସାର ପ୍ରକଟିତ କରି ତମୋଧ୍ୱଂସପୂର୍ବକ ପ୍ରକାଶିତ ହେଲେ । ସେ ନିଜ ଶରୀରରୁ ବିବିଧ ପ୍ରାଣିର ସୃଷ୍ଟି ଇଚ୍ଛା କରି ଚିନ୍ତା ମାତ୍ରକେ ପ୍ରଥମ ଜଳର ସୃଷ୍ଟି କରି ତହିଁରେ ଆପଣାର ଶକ୍ତିବୀଜ ଅର୍ପଣ କଲେ । ଏହା ପରେ ଅର୍ପିତ ବୀଜ ଅଣ୍ଡରେ ପରିଣତ ହେଲା,

ସେହି ଅଣ୍ଡରେ ପିତାମହ ବ୍ରହ୍ମାରୂପେ ଜନ୍ମ ପରିଗ୍ରହ କଲେ । ନର ଅର୍ଥାତ୍ ପରମାତ୍ମାଠାରୁ ଜଳ ସର୍ବାଗ୍ରେ ପ୍ରସୂତ ହୋଇ ଅପତ୍ୟ ପ୍ରତ୍ୟୟରେ ଜଳକୁ ନାର ବୋଲାଯାଏ । ସେହି ନାର ପରମାତ୍ମାର ସର୍ବପ୍ରଥମ ଅୟନ ବା ଆଶ୍ରୟ ହୋଇ ତାହାଙ୍କୁ ନାରାୟଣ ବୋଲାଯାଏ ।

ଯେ କି ଆଦିକାରଣ ପ୍ରଥମପୁରୁଷ ତାହାଙ୍କର ନାମ ବ୍ରହ୍ମା ସେହି ବ୍ରହ୍ମା କର୍ତ୍ତୃକ ମହତ୍ତତ୍ତ୍ୱ ଅହଂକାରତତ୍ତ୍ୱ ଓ ପଞ୍ଚତନ୍ମାତ୍ର ଏହି ସାତୋଟି ଅନନ୍ତ କାର୍ଯ୍ୟକ୍ଷମ ପୁରୁଷଗୁଡ଼ିକ ପଦାର୍ଥର ସୂକ୍ଷ୍ମମାତ୍ରା ହେଉଛି ଏହି ଜଗତର ସୃଷ୍ଟି ହୋଇଅଛି । ଆକାଶାଦି ପଞ୍ଚଭୂତ ମଧ୍ୟରେ ପର ପର ପ୍ରତ୍ୟେକ ପୂର୍ବ ପୂର୍ବରୁ ଗୁଣ ଗ୍ରହଣ କରିଥାଏ । ଅର୍ଥାତ୍ ପ୍ରଥମ ଭୂତ ଆକାଶର ଏକଗୁଣ ଶବ୍ଦ । ଦ୍ୱିତୀୟ ଭୂତ ବାୟୁର ଦୁଇଗୁଣ ଶବ୍ଦ ଓ ସ୍ପର୍ଶ । ତୃତୀୟ ଭୂତ ଅଗ୍ନିର ତିନଗୁଣ ଶବ୍ଦ, ସ୍ପର୍ଶ ଓ ରୂପ । ଚତୁର୍ଥ ଭୂତ ଜଳର ଚାରିଗୁଣ ଶବ୍ଦ, ସ୍ପର୍ଶ, ରୂପ ଓ ରସ । ପଞ୍ଚମ ଭୂତ ପୃଥିବୀର ପାଞ୍ଚଗୁଣ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ।

ମହାରାଜ ! ସୃଷ୍ଟିର ଆଦିକାଳରେ ହିରଣ୍ୟଗର୍ଭରୂପରେ ଅବସ୍ଥିତ ପରମାତ୍ମା ବେଦାନୁକ୍ରମେ ସମସ୍ତଙ୍କର ପୃଥକ୍ ପୃଥକ୍ ନାମ, ପୃଥକ୍ ପୃଥକ୍ କର୍ମ ଓ ପୃଥକ୍ ପୃଥକ୍ ବୃତ୍ତି ବିଭାଗ ନିର୍ଦ୍ଦେଶ କରି ଦେଇଥିଲେ । ସେହି ପ୍ରଭୁ କର୍ମାତ୍ମଭୂତ ଇନ୍ଦ୍ରାଦି ଦେବଗଣ ଓ ଜ୍ୟୋତିଷ୍ଟୋମାଦି ସନାତନଯଜ୍ଞ ସକଳ ସୃଷ୍ଟି କଲେ । ସେହି ପ୍ରଭୁ ଅଗ୍ନି ବାୟୁ ଓ ସୂର୍ଯ୍ୟଠାରୁ ଯଜ୍ଞ କାର୍ଯ୍ୟ ସମ୍ପାଦନ ସକାଶେ ଯଥାକ୍ରମେ ଋକ୍, ଯଜୁ ଓ ସାମ ନାମକ ବେଦ ତ୍ରୟ ଦୋହନ କଲେ । ସେହି ପ୍ରଭୁ କାଳ ଓ କାଳର ବିଶେଷ ବିଶେଷ ବିଭାଗ ନକ୍ଷତ୍ରସମୂହ, ଗ୍ରହଗଣ, ନଦୀ, ସମୁଦ୍ର, ପର୍ବତ ଆଦି ପ୍ରଜାସୃଷ୍ଟିର ଅଭିଳାଷରେ ଉତ୍ପାଦନ କଲେ । ପ୍ରଭୁ କର୍ମସମଷ୍ଟିର ବିଭାଗ ନିମିତ୍ତ ଧର୍ମ ଓ ଅଧର୍ମର ବିଭାଗ କରି ପ୍ରାଣିମାନଙ୍କୁ ସୁଖ ଦୁଃଖାଦି ସ୍ୱ ସ୍ୱ ଭାବରେ ନିଯୁକ୍ତ

କଲେ । ସୂକ୍ଷ୍ମ ଓ ପରିଣାମୀ ପଞ୍ଚତନ୍ମାତ୍ରାର ସହିତ ଏହି ସମୁଦାୟ ସୃଷ୍ଟି ଆନୁପୂର୍ବିକ୍ରମେ ସୂକ୍ଷ୍ମରୁ ସ୍ଥୂଳ ଓ ସ୍ଥୂଳରୁ ସ୍ଥୂଳତର କ୍ରମେ ସୃଷ୍ଟି କଲେ । ସେହି ପ୍ରଭୁ ପରମେଶ୍ୱର ସୃଷ୍ଟିର ଆଦରେ ଯାହାକୁ ଯେଉଁ କର୍ମରେ ନିଯୁକ୍ତ କରିଥିଲେ, ସେମାନେ ପୁନର୍ଜନ୍ମ ଗ୍ରହଣ କଲା ପରେ ସ୍ୱତଃ ସେହି ସେହି କର୍ମର ଆଚାର ବ୍ୟବହାର କରିବାକୁ ଲାଗିଲେ । ଧର୍ମ ଅଧର୍ମ, ସତ୍ୟ ମିଥ୍ୟା, କ୍ରୂରତା ଓ ମୃଦୁତା ପ୍ରଭୃତି ଯାହାର ଯେ ଗୁଣ ପ୍ରଭୁ ସୃଷ୍ଟିକାଳରେ ବିଧାନ କରିଥିଲେ, ସୃଷ୍ଟିର ଉତ୍ତରକାଳରେ ମଧ୍ୟ ତାହାଠାରେ ସେହି ସେହି ଗୁଣ ସ୍ୱୟଂ ପ୍ରବେଶ ହେଲା । ଯେପରି ଋତୁସମାଗମରେ ଋତୁ ଚିହ୍ନ-ସମୂହ ଆପେ ଆପେ ଦେଖା ଦିଏ, ସେହିପରି ପ୍ରାକ୍ତନ କର୍ମଫଳ ଦେହଧାରୀ ପକ୍ଷରେ ଯଥାକାଳରେ ଆପେ ଆପେ ଉପସ୍ଥିତ ହୋଇଥାଏ । ସେହି ପ୍ରଭୁ ଆପଣା ଦେହ ଦୁଇ ଖଣ୍ଡରେ ବିଭକ୍ତ କରି ଅର୍ଦ୍ଧେକ ଅଂଶରେ ପୁରୁଷ ଓ ଅର୍ଦ୍ଧେକ ଅଂଶରେ ସ୍ତ୍ରୀର ସୃଷ୍ଟି କଲେ । ଯଥା ମନୁ :—

"ଦ୍ୱିଧାକୃତ୍ୱାତ୍ମନୋ ଦେହମର୍ଦ୍ଧେନ ପୁରୁଷୋ ଭବେତ୍ ।
ଅର୍ଦ୍ଧେନ ନାରୀ ତସ୍ୟାଂ ସ ବିରାଜମସୃଜତ୍ ପ୍ରଭୁଃ ॥"

ସୃଷ୍ଟି ସମ୍ବନ୍ଧରେ ମହାଦେବ ପାର୍ବତୀଙ୍କ ପ୍ରତି ଯଥା :—

"ପ୍ରକୃତ୍ୟା ଜାୟତେ ସର୍ବଂ ପ୍ରକୃତ୍ୟା ସୃଜ୍ୟତେ ଜଗତ୍ ।
ତୋୟାତ୍ତୁ ବୁଦ୍‌ବୁଦଂ ଦେବି ଯଥା ତୋୟେ ବିଲୀୟତେ ।"

ଅର୍ଥାତ୍ ଯେପରି ଜଳରୁ ବୁଦ୍‌ବୁଦ ଜାତ ହୋଇ ତାହା ସେହି ଜଳରେ ଲୀନ ହୁଏ, ସେହିପରି ସଂସାର ପ୍ରକୃତିଠାରୁ ଉତ୍ପନ୍ନ ହୋଇ ପ୍ରକୃତିରେ ଲୟପ୍ରାପ୍ତ ହୋଇଥାଏ । ଫଳରେ ବୀଜ ଓ ବୃକ୍ଷର ଯେ ସମ୍ବନ୍ଧ, ସ୍ରଷ୍ଟା ଓ ସୃଷ୍ଟବସ୍ତୁର ସେହି ସମ୍ବନ୍ଧ ମାତ୍ର । ସୃଷ୍ଟି ସମ୍ବନ୍ଧରେ ତୈତିରୀୟ ଉପନିଷଦ୍ ଯଥା :—
"ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ ଯୋ ବେଦ ନିହିତ ଗୁହାୟାଂ ପରମେବ୍ୟୋମନ୍ ସୋଽଶ୍ନୁତେ ସର୍ବାନ୍ କାମାନ୍ ସହ ବ୍ରହ୍ମଣା ବିପଶ୍ଚିତେତି, ତସ୍ମାଦ୍ୱା

ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୂତଃ ଆକାଶାଦ୍ ବାୟୁର୍ବାୟୋରଗ୍ନିଃ ଅଗ୍ନେରାପଃ ଅଦ୍ଭ୍ୟଃ ପୃଥିବୀ ପୃଥିବ୍ୟା ଓଷଧୟଃ ଓଷଧୀଭ୍ୟୋଽନ୍ନଂ ଅନ୍ନାତ୍ ପୁରୁଷଃ ସ ବା ଏଷଃ ପୁରୁଷୋଽନ୍ନରସମୟଃ ତସ୍ୟେଦମେବଶିରଃ ଅୟଂ ଦକ୍ଷିଣପକ୍ଷଃ ଅୟମୁତ୍ତରପକ୍ଷଃ ଅୟମାତ୍ମା ।” ଅର୍ଥାତ୍ ସତ୍ୟସ୍ୱରୂପ ପରଂବ୍ରହ୍ମଠାରୁ ପ୍ରଥମେ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଔଷଧି, ଔଷଧିରୁ ଅନ୍ନ ଓ ଅନ୍ନରୁ ପୁରୁଷ ଇତ୍ୟାଦି କ୍ରମେ ସୃଷ୍ଟି ହୋଇଅଛି । ଅର୍ଥାତ୍ ଏକର ବିକାରରେ ଅନ୍ୟର ଉତ୍ପତ୍ତି କଳ୍ପନା ହୋଇଅଛି । ମୁଣ୍ଡକ ଉପନିଷଦରେ ଲେଖା ଅଛି, ଯେପରି ଅଗ୍ନିରୁ ବିସ୍ଫୁଲିଙ୍ଗରାଶି ନିର୍ଗତ ହୋଇ ଅଗ୍ନିର ରୂପାଦି ପ୍ରାପ୍ତ ବିସ୍ତାରପୂର୍ବକ ତାହା ଅଗ୍ନିରେ ଲୟ ହୁଏ, ସେହିପରି ଅବିନାଶୀ ଈଶ୍ୱରଙ୍କଠାରୁ ଜୀବ ଉତ୍ପନ୍ନ ହୋଇ ପୁନର୍ବାର ତାଙ୍କଠାରେ ଲୟପ୍ରାପ୍ତ ହୁଏ । ଐତରେୟ ଉପନିଷଦରେ ବୋଲିଅଛନ୍ତି ଯେ, ସୃଷ୍ଟିର ଆଦିରେ ଏକମାତ୍ର ପରମେଶ୍ୱର ବିଦ୍ୟମାନ ଥିଲେ । ସେ ପ୍ରଥମରେ ସୃଷ୍ଟି କାମନା କରି ଭୂର୍ଲୋକ, ଦ୍ୟୁଲୋକ, ସମୁଦ୍ର ଓ ମୃତ୍ତିକା ଆଦି ସୃଷ୍ଟି କଲେ, ସେହି ପ୍ରଭୁ ପ୍ରାଣିମାନଙ୍କର ଶୀର୍ଷ ବିଦୀର୍ଣ୍ଣ କରି ସମସ୍ତଙ୍କ ମଧ୍ୟରେ ପ୍ରବେଶ କଲେ । ଅତଏବ ଈଶ୍ୱର ସୃଷ୍ଟପଦାର୍ଥ ମାତ୍ରରେ ବିଦ୍ୟମାନ ଅଛନ୍ତି । ସୃଷ୍ଟି ସମ୍ବନ୍ଧରେ ଋଗ୍‌ବେଦ ଯଥା:—

“ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମଃ ।”

ମହାରାଜ ! ଏହିରୂପ ସୃଷ୍ଟିକର୍ତ୍ତାର ସୃଷ୍ଟିକର୍ତ୍ତୃତ୍ୱ ପକ୍ଷରେ ଅନେକ ପ୍ରକାର ମତାମତ ଶାସ୍ତ୍ରାଦିରୁ ମିଳୁଅଛି । ବାସ୍ତବିକ ସାରକଥା ଏହି ଯେ, ବେଦ, ଉପନିଷଦ, ପୁରାଣ ଓ ଶାସ୍ତ୍ର ପ୍ରଭୃତି ଅନୁସନ୍ଧାନ କରି ଦେଖିଲେ ଈଶ୍ୱରଙ୍କଠାରୁ ଜଗତ୍ ଉତ୍ପନ୍ନ, ଏଥିରେ କୌଣସି ପ୍ରକାର ଭ୍ରମ ନାହିଁ । ଲୋକେ ଯାହା କି ସାକାର, ନିରାକାର ଓ ଅସଂଖ୍ୟାକାର ବୋଲି ଈଶ୍ୱରଙ୍କୁ ଭାବିଥାନ୍ତି, ସେପରି ଭାବନାରେ ବିଶେଷ କିଛି ପ୍ରଭେଦ ନାହିଁ ।

କାରଣ, ଯାହା ଅସଂଖ୍ୟାକାର ତାହା ମଧ୍ୟ ନିରାକାର । ସେହେତୁ ଜଗତ ପ୍ରତ୍ୟେକ ପଦାର୍ଥରେ ଈଶ୍ୱର ବିଦ୍ୟମାନ ଥିବା ସ୍ଥଳେ ସମସ୍ତ ନାମ ଓ ସମସ୍ତ ରୂପ ଏକ ନାମରେ ଓ ଏକ ରୂପରେ ହୃଦୟଙ୍ଗମ ହେବା ଅସମ୍ଭବ । ଏଣୁ ଶାସ୍ତ୍ରକାରମାନେ ନିରାକାର ବା ନାମଶୂନ୍ୟ ବୋଲି ସ୍ଥିର କରିଅଛନ୍ତି । ସୁତରାଂ ଯାହା ନିରାକାର, ତାହା ମଧ୍ୟ ଅସଂଖ୍ୟାକାର । ନିରାକାର ଶବ୍ଦର ଦୁଇ ଅର୍ଥ ହୋଇ ପାରେ—ଅର୍ଥାତ୍ ଯାହାର କିଛି ମାତ୍ର ଆକାର ନାହିଁ ଅଥବା ଯାହାର ଆକାର ଅନିର୍ଦ୍ଦିଷ୍ଟ—ଅର୍ଥାତ୍ ଯେଉଁ ଆକାରର ସଂଖ୍ୟା ଓ ପରିମାଣର ନିର୍ଦ୍ଦେଶ କରିଯାଇ ପାରେ ନାହିଁ । ଅତଏବ ନିରାକାର ଓ ଅସଂଖ୍ୟାକାର ମଧ୍ୟରେ କିଛି ମାତ୍ର ପ୍ରଭେଦ ନାହିଁ; ଅର୍ଥାତ୍ ଯେ ନିରାକାର, ସେ ଅସଂଖ୍ୟାକାର । ବସ୍ତୁତଃ ଈଶ୍ୱରଙ୍କର ଅସଂଖ୍ୟାକାର ଧାରଣା ହେବା ଅସମ୍ଭବ । ଏଣୁ ତାଙ୍କଠାରେ ନିରାକାର ଶବ୍ଦ ପ୍ରୟୋଗ ହୋଇଥାଏ । ମହାରାଜ ! ଯେପରି ସୂର୍ଯ୍ୟର ଆଲୋକ ଶରିବନ୍ଦଳ ଓ ସ୍ଫଟିକମଣି ପ୍ରଭୃତିରେ ବିବିଧବର୍ଣ୍ଣ ପ୍ରକାଶ କରିବାର ଦେଖି ଲୋକେ ସୂର୍ଯ୍ୟର ନାନା ବର୍ଣ୍ଣ କଳ୍ପନା କରିଥାନ୍ତି, ମାତ୍ର ମୂଳରଶ୍ମି ଏକରୂପ, ସେହିପରି ଏକ ମୂଳ ସାମଗ୍ରୀ ଈଶ୍ୱର । ତାଙ୍କର ଅବତାରଭେଦରେ, ବିଭିନ୍ନ ରୂପ ମଧ୍ୟରେ ଯେ ଯେଉଁ ରୂପ ଦେଖି ଯାଇଅଛନ୍ତି, ସେମାନେ ସେହି ରୂପତତ୍ତ୍ୱର ମାହାତ୍ମ୍ୟ ପ୍ରକାଶ କରି ଯାଇଅଛନ୍ତି ।

ଆତ୍ମବୋଧେ ଯଥା:—

"ଯଥା ଶରିବତୋୟସ୍ଥଂ ରବିଂ ପଶ୍ୟନ୍ତ୍ୟନେକଧା ।
ତଥୈବ ମାୟ୍ୟା ଦେହେ ବହୁଧାତ୍ମାନମୀକ୍ଷତେ ।"

ଇତି ସୃଷ୍ଟିପ୍ରକ୍ରିୟା ସମାପ୍ତ ।

ଏପରି ରାଜା ଜନାର୍ଦ୍ଦନ—ମହାଭାଗ ! ଇତିପୂର୍ବେ ଆପଣ ଯାହା ଙ୍କ ଈଶ୍ୱରତତ୍ତ୍ୱ ଓ ଈଶ୍ୱରଙ୍କ ସୃଷ୍ଟି ନୈପୁଣ୍ୟ ସ୍ୱୟଂ ବିଶ୍ୱବିଧାତାର କୌଣ ଜନ୍ତ କଳ୍ପନାର ଅସାଧ ବୋଲି ସ୍ଥିର କରିଅଛନ୍ତି, ତାହାହିଁ ଯଥାର୍ଥ । ଏଣୁ ସେ ସମ୍ବନ୍ଧରେ ବିଶେଷ କିଛି ନ ବୋଲି ମୁକ୍ତିର ବିଷୟ ଶୁଣାଇଲେ କୃତାର୍ଥ ହେବି ।

ସାଧୁ—ମହାରାଜ ! ଶାସ୍ତ୍ରକାରମାନେ ପ୍ରଳୟ ଚାରି ପ୍ରକାର ବୋଲି ନିର୍ଦ୍ଦେଶ କରିଅଛନ୍ତି । ଯଥା:—ନିତ୍ୟପ୍ରଳୟ, ପ୍ରାକୃତପ୍ରଳୟ, ନୈମିତ୍ତିକ-ପ୍ରଳୟ ଓ ଆତ୍ୟନ୍ତିକପ୍ରଳୟ । ସୁଷୁପ୍ତିକାଳରେ ପ୍ରାଣିର ଯେ ଲୟ, ତାହାର ନାମ ନିତ୍ୟପ୍ରଳୟ । ବିଦେହ କୈବଲ୍ୟ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ଯେ ଲୟ, ତାହାର ନାମ ପ୍ରାକୃତପ୍ରଳୟ । କଳ୍ପାନ୍ତେ ବ୍ରହ୍ମାର ନିଦ୍ରାଗମ ନିମିତ୍ତ ଭୂର୍ଲୋକ, ଭୁବର୍ଲୋକ ଓ ସ୍ୱର୍ଲୋକର ଯେ ଲୟ, ତାହାର ନାମ ନୈମିତ୍ତିକପ୍ରଳୟ । ତତ୍ତ୍ୱଜ୍ଞାନ ଜନିତହେତୁକ ପରମାତ୍ମାରେ ଯେ ଲୟ, ତାହାର ନାମ ଆତ୍ୟନ୍ତିକପ୍ରଳୟ । ଏହିରୂପେ ପ୍ରଳୟ ଓ ସୃଷ୍ଟିପ୍ରବାହ ଚଳି ଆସୁଅଛି । କେହି କେହି ଶାସ୍ତ୍ରକାରମାନେ ମହାପ୍ରଳୟରେ ମଧ୍ୟ ସଂସାର ବୀଜରୂପେ ଅବସ୍ଥିତ ବୋଲି ସ୍ୱୀକାର କରନ୍ତି । ଆଉ ମଧ୍ୟ କେହି କେହି ଦାର୍ଶନିକ ଅଦ୍ୱୈତୀ ମହାପ୍ରଳୟ ସ୍ୱୀକାର କରନ୍ତି ନାହିଁ । ବାସ୍ତବିକ ଅବସ୍ଥାନ୍ତର ପ୍ରାପ୍ତିର ନାମ ପ୍ରଳୟ । ଲୋକର କର୍ମାନୁସାରେ ଅବସ୍ଥାନ୍ତର ପ୍ରାପ୍ତି ହୋଇଥାଏ । ଅର୍ଥାତ୍ କାୟ ମନ ଓ ବାକ୍ୟଦ୍ୱାରା ଯେ ସମସ୍ତ ଶୁଭାଶୁଭ କର୍ମ କୃତ ହୁଏ, ତାହାର ଗତି ଅନୁସାରେ ଲୋକର ଉତ୍ତମ ମଧ୍ୟମ ଓ ଅଧମ ଗତି ଲାଭ ହୋଇଥାଏ । ମନୁଷ୍ୟମାନଙ୍କର ସାତ୍ତ୍ୱିକ, ରାଜସ ଓ ତାମସ ଅନ୍ତଃକରଣର ଯେଉଁ ଭାବରେ ଯେଉଁ କର୍ମ ଆଚରିତ ହୁଏ, ସେହି ଭାବର ଉତ୍କର୍ଷ ଅନୁସାରେ ପରକାଳରେ ସେହି ରୂପ ଶରୀରଦ୍ୱାରା ଏହି ସମସ୍ତ କର୍ମର ଫଳ ଭୋଗ କରିବାକୁ ହୋଇଥାଏ । ଅତଏବ ଜୀବ କର୍ମଚକ୍ରରେ ପଡ଼ି ଜନ୍ମ ଜରା ଓ ମୃତ୍ୟୁର ଅଧୀନ ହୋଇ କ୍ରମାଗତ ଉଚ୍ଚ ଓ ନୀଚ

ଯୋନିରେ ପରିଭ୍ରମଣ କରିବାକୁ ହୋଇଥାଏ । ମନୁଷ୍ୟ ସତ୍‌କର୍ମ ଅନୁସାରେ ସ୍ୱର୍ଗଲାଭ କରେ, ମାତ୍ର କର୍ମଫଳ ଶେଷ ହୋଇଗଲେ ପୁନରାୟ ମର୍ତ୍ତ୍ୟକୁ ଆଗମନ କରେ; ଏହିରୂପେ ଗତାଗତି କ୍ରମେ ମୁକ୍ତିଲାଭର ସମ୍ଭାବନା ଅଛି କି ନାହିଁ, ଏ ବିଷୟ ଜାଣିବା ସକାଶେ ଶାସ୍ତ୍ରକାରମାନେ ଅବହମାନକାଳରୁ ଲାଗି ଅଛନ୍ତି; ମାତ୍ର ଅନୁସନ୍ଧାନଦ୍ୱାରା ବୋଧହୁଏ ଏ ପର୍ଯ୍ୟନ୍ତ କୃତକାର୍ଯ୍ୟ ହୋଇ ପାରି ନାହାନ୍ତି । ଯାହାହେଉ ସେହି ମାର୍ଗରେ ଅଗ୍ରସର କରିବା ସକାଶେ ଶାସ୍ତ୍ର ଗ୍ରନ୍ଥମାନ ସହାୟତା କରି ଉଜ୍ଜ୍ୱଳ ପ୍ରଭାର ଆଲୋକ ବିସ୍ତାର କରି ରହିଅଛି । ସେହି ଶାସ୍ତ୍ରାଲୋକ ପ୍ରଭାର ଅନୁସରଣରେ ଅଗ୍ରସର ହୋଇ ପାରିଲେ ମନୁଷ୍ୟର ସୁଖ ଦୁଃଖର ଅତୀତ ଏକ ଅବସ୍ଥା ପ୍ରତି ଦୃଷ୍ଟି ପତିତ ହୁଏ । ଈଶ୍ୱରାନୁଗ୍ରହରୁ ଯେପରି ଅବସ୍ଥା ପାଇ ପାରିଲେ ତାକୁ ଲୟ ବା ମୁକ୍ତି ବୋଲାଯାଏ । ସେହି ଅବସ୍ଥାରେ ଅନନ୍ତ ସୁଖ ଭୋଗ ହୋଇଥାଏ, ସେହି ଅବସ୍ଥାରେ ମନୁଷ୍ୟକୁ ଜନ୍ମ ଜରା ଓ ମୃତ୍ୟୁର ଅଧୀନ ହେବାକୁ ହୁଏ ନାହିଁ । ସେପରି ଅବସ୍ଥାର ନିକଟରେ ଇନ୍ଦ୍ର ଓ କୁବେରଙ୍କ ଉଚ୍ଚପଦ ପର୍ଯ୍ୟନ୍ତ ତୁଚ୍ଛ ବୋଲି ଅନ୍ତର୍ଦର୍ଶୀମାନେ ମନେ କରିଥାନ୍ତି । ସେହି ମୁକ୍ତିର ନାମ କୈବଲ୍ୟ, ନିର୍ବାଣ, ସୋଽହଂଭାବ ଓ ଆତ୍ମାରେ ଆତ୍ମସମ୍ମିଳନ ପ୍ରଭୃତି । କେହି କେହି ଈଶ୍ୱରଙ୍କ ସହିତ ଐକ୍ୟଭାବ ଅର୍ଥାତ୍ ସାରୂପ୍ୟ ଓ କେହି ବା ସାଲୋକ୍ୟ ଅର୍ଥାତ୍ ଦାସାନୁଦାସଭାବରେ ଈଶ୍ୱରଙ୍କୁ ଦେଖିବାର ନାମ ମୁକ୍ତି ବୋଲି ସ୍ୱୀକାର କରନ୍ତି ।

ରାଜା ଜନାର୍ଦ୍ଦନ— ମହାଭାଗ ! କି ଉପାୟ ଅବଲମ୍ବନ କରି ମୁକ୍ତିମାର୍ଗରେ ଉପନୀତ ହେବାକୁ ହୁଏ, ତାହା କହିଲେ କୃତାର୍ଥ ହେବି ।

ଏଥର ସାଧୁ— ମହାରାଜ ! ସେଥି ସକାଶେ ତିନି ଗୋଟି ପଥ ନିର୍ଦ୍ଦିଷ୍ଟ ଅଛି । ଯଥା:— ଜ୍ଞାନ, ଭକ୍ତି ଓ କର୍ମ; ଅର୍ଥାତ୍ କେହି ଜ୍ଞାନ,

କେହି ଭକ୍ତି, କେହି ବା କର୍ମଦ୍ୱାରା ମୁକ୍ତି ଲାଭ ହେବାର କଳ୍ପନା କରନ୍ତି; କିନ୍ତୁ ତତ୍ତ୍ୱଦର୍ଶିମାନେ ଜ୍ଞାନ, ଭକ୍ତି ଓ କର୍ମ ଏକ ବୋଲି ଭାବିଥାନ୍ତି । ଯେହେତୁ ଏକ ମାର୍ଗରେ ଅଗ୍ରସର ହୋଇ ପାରିଲେ ଅନ୍ୟ ମାର୍ଗ ଆପେ ଆପେ ଅଧିଗତ ହୋଇଥାଏ । ଭକ୍ତିବାଦମାନେ ଭକ୍ତିକୁ ତିନ ଶ୍ରେଣୀରେ ବିଭକ୍ତ କରନ୍ତି । ଯଥା:—ସ୍ୱରୂପସିଦ୍ଧା, ସଙ୍ଗସିଦ୍ଧା ଓ ଆରୋପସିଦ୍ଧା । ଆରୋପସିଦ୍ଧ ଭକ୍ତି ଯଦି ବା ପ୍ରକୃତ ଭକ୍ତି ନୁହେ, କିନ୍ତୁ ତାହା ଭଗବାନରେ ସମର୍ପିତ ହେବା ହେତୁ ଭକ୍ତିରୂପରେ ପରିଗଣିତ ହୋଇଥାଏ । ଅର୍ଥାତ୍ ମଧ୍ୟ କର୍ମ ସ୍ୱୟଂ ଭକ୍ତି ନୁହେ; ମାତ୍ର ଭଗବାନଙ୍କଠାରେ ସମର୍ପିତ ହେବା ହେତୁ ଭକ୍ତିରୂପେ ପରିଗଣିତ ହୋଇଥାଏ । ଅତଏବ ଭକ୍ତିବାଦମାନେ କହନ୍ତି, ଯେପରି ଲୌହ ସୂର୍ଯ୍ୟାଲୋକର ସମ୍ବନ୍ଧ ଲାଭ କଲେ ସୂର୍ଯ୍ୟକାନ୍ତମଣିର ଦାହିକା ଶକ୍ତି ସଞ୍ଚାର ହୁଏ, ସେହିପରି କର୍ମ ମଧ୍ୟ ଭଗବାନଙ୍କଠାରେ ସମର୍ପିତ ହୋଇ ତାହାଙ୍କ ସ୍ୱରୂପ ଶକ୍ତି ଲାଭ କରିଥାଏ । ଯେହେତୁ ଲବଣାକରରେ ନିପତିତ ପଦାର୍ଥମାନଙ୍କର ପରିଣାମ ଲବଣ ଭିନ୍ନ ଅନ୍ୟ କିଛି ନୁହେ । ମୁକ୍ତି ସମ୍ବନ୍ଧରେ ନ୍ୟାୟଦର୍ଶନ, ଯଥା:—"ଆତ୍ମକର୍ମସୁ ମୋକ୍ଷବ୍ୟାଖ୍ୟାତଃ ।" ଅର୍ଥାତ୍ ଆତ୍ମକର୍ମ ଭଗବତ୍ କର୍ମ ଅଥବା ଭଗବାନଙ୍କଠାରେ ନିଯୋଜିତ ନିଷ୍କାମ କର୍ମଦ୍ୱାରା ମୋକ୍ଷ ଲାଭ ହୁଏ । କେହି କେହି ଟୀକାକାର ଆତ୍ମକର୍ମ ବୋଇଲେ ଶ୍ରବଣ, ମନନ ଓ ନିଦିଧ୍ୟାସନ ବୋଲି ଅର୍ଥ କରନ୍ତି । ଏଠାରେ ଆଲୋଚନାଦ୍ୱାରା ଆତ୍ମାର ସ୍ୱରୂପତତ୍ତ୍ୱ ଅବଗତିର ନାମ ଶ୍ରବଣ । ତର୍କଦ୍ୱାରା ଶ୍ରବଣର ସାର୍ଥକତା ପ୍ରତିପାଦନର ନାମ ମନନ । ତନ୍ମୟ ବା ସମାଧିର ନାମ ନିଦିଧ୍ୟାସନ । ମହାତ୍ମନ ! ସେପରି ଅବସ୍ଥା ପାଇ ପାରିଲେ ପୁନର୍ବାର ସଂସାରରେ ଆସି ନୂତନ ବନ୍ଧନରେ ଆବଦ୍ଧ ହେବାକୁ ହୁଏ ନାହିଁ । ସୁତରାଂ ଆତ୍ମାରେ ଆତ୍ମସାକ୍ଷାତ୍କାର ହୋଇଥାଏ । ଆତ୍ମସାକ୍ଷାତ୍କାର ହେଲେ ଅଳ୍ପକ୍ଷଣ ମଧ୍ୟରେ ଜୀବ ସମସ୍ତ ଅଦୃଷ୍ଟଫଳ ଭୋଗ କରେ, ଧର୍ମାଧର୍ମ ଆଦି ଲୋପ ହୁଏ । ଜୀବର ଆକାଂକ୍ଷା ପୂର୍ଣ୍ଣ ହୋଇ ପ୍ରବୃତ୍ତିର ନିବୃତ୍ତି

ହେତୁ ସୁଖ ଓ ଦୁଃଖଭୋଗ କମ୍ବା ଜନ୍ମ ଓ ଜନ୍ମର ପ୍ରୟୋଜକ ହୁଏ ନାହିଁ । ତେତେବେଳେ,ଆତ୍ମାରେ ଆତ୍ମସମ୍ମେଳନ ଜ୍ଞାନ ହେତୁକ ମୁକ୍ତି ଲାଭ ହୁଏ ।

ମହାରାଜ ! ସାଂଖ୍ୟଦାର୍ଶନିକମାନେ ପୁରୁଷ ଓ ପ୍ରକୃତିର ଭେଦାଭେଦ ଜ୍ଞାନାତ୍ମକତ୍ୱ ଜ୍ଞାନଲାଭ ମୁକ୍ତିଲାଭର ହେତୁ ବୋଲି ସ୍ୱୀକାର କରନ୍ତି । ଯଥା:—

"ଦୃଷ୍ଟାମୟେତ୍ୟୁପେକ୍ଷକ ଏକୋଦୃଷ୍ଟାହମିତ୍ୟୁପରମତ୍ୟନ୍ୟା ।
ସତିସଂଯୋଗେଽପି ତୟୋଃ ପ୍ରୟୋଜନଂ ନାସ୍ତି ସର୍ଗସ୍ୟ ।"

ଅର୍ଥାତ୍ ଆମ୍ଭେ ପ୍ରକୃତି ଦର୍ଶନ କରୁଅଛୁଁ, ଏହି ବିବେଚନାରେ ଏକ ବ୍ୟକ୍ତି ପୁରୁଷ ବିରତ ହୁଏ, ପୁରୁଷ ଆମ୍ଭଙ୍କୁ ଦର୍ଶନ କରୁଅଛି, ଏହି ବିବେଚନାରେ ଏକ ବ୍ୟକ୍ତି ପ୍ରକୃତି ବିରତ ହୁଏ । ସେହି ହେତୁରୁ ପୁରୁଷର ଭୋକ୍ତୃତା ଯୋଗ୍ୟତ୍ୱ ଓ ପ୍ରକୃତିର ଭୋଗ୍ୟତା ଯୋଗ୍ୟତ୍ୱ ଥିଲେ ମଧ ସୃଷ୍ଟି ପ୍ରୟୋଜକ, ଅର୍ଥାତ୍ ଅବିଦ୍ୟାସହ କୃତ ଧର୍ମ ଓ ଅଧର୍ମ ରହେ ନାହିଁ; ସୁତରାଂ ସୃଷ୍ଟି ହୁଏ ନାହିଁ; ଅତଏବ ବିବେକ ସାକ୍ଷାତ୍କାର ହେଲେ ପ୍ରକୃତି ଓ ପୁରୁଷର ସନ୍ନିଧାନରୂପ ସଂଯୋଗ ଥାଏ ନାହିଁ, ସେ ଅଦୃଷ୍ଟ ରହେ ନାହିଁ ବା ସୃଷ୍ଟି ହୁଏ ନାହିଁ । କର୍ମ ଶେଷ ହେଲେ ନିବୃତ୍ତି । ଯଥା ସାଙ୍ଖ୍ୟେ:—

"ରଙ୍ଗସ୍ୟ ଦର୍ଶୟିତ୍ୱା ନିବର୍ତ୍ତତେ ନର୍ତ୍ତକୀ ଯଥା ନୃତ୍ୟାତ୍ ।
ପୁରୁଷସ୍ୟ ତଥାତ୍ମାନଂ ପ୍ରକାଶ୍ୟ ନିବର୍ତ୍ତତେ ପ୍ରକୃତିଃ ।"

ଅର୍ଥାତ୍ ଯେପରି ନର୍ତ୍ତକୀ ରଙ୍ଗସଭା ମଧ୍ୟରେ ନୃତ୍ୟ ଦେଖାଇ ନୃତ୍ୟରୁ ନିବୃତ୍ତ ହୁଏ, ସେହିପରି ପ୍ରକୃତି ପୁରୁଷ ନିକଟରେ ନିଜ ସ୍ୱରୂପ ପ୍ରକାଶ କରି ନିବୃତ୍ତ ଅର୍ଥାତ୍ ପ୍ରକୃତିରୁ ବିରତ ହୋଇଥାଏ ।

ମହାରାଜ ! କେହି କେହି ମଧ୍ୟ ମନ କେବଳ ବନ୍ଧମୋକ୍ଷର କାରଣ ବୋଲି ନିର୍ଦ୍ଦେଶ କରନ୍ତି, ଅର୍ଥାତ୍ ମନ ଯେତେବେଳେ ବିଷୟାସକ୍ତ ହୁଏ, ତେତେବେଳେ ବନ୍ଧନର କାରଣ, ଆଉ ଯେତେବେଳେ ବିଷୟ ପରିତ୍ୟାଗ କରେ, ତେତେବେଳେ ମୁକ୍ତିର କାରଣ ହୋଇଥାଏ । ଅତଏବ ଯୋଗିମାନେ ମନକୁ ବିଷୟ ବାସନାରୁ ନିବୃତ୍ତ କରି ମୁକ୍ତି ଉଦ୍ଦେଶ୍ୟରେ ବ୍ରହ୍ମରୂପ ପରମେଶ୍ୱରଙ୍କର ନିରନ୍ତର ଚିନ୍ତା କରିଥାନ୍ତି । ଯଥା—

"ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ ।"

ସାର କଥା ଏହି ଯେ, ଯେପରି କ ଚୁମ୍ବକପ୍ରସ୍ତର ଲୌହ ଆକର୍ଷଣ କରେ, ସେହିପରି ଈଶ୍ୱର ଚିନ୍ମୟ ହୋଇ ସାଧୁମାନଙ୍କୁ ଅମୃତଭାବରେ ଆକର୍ଷଣ କରିଥାନ୍ତି । ମୁକ୍ତି ବିଷୟରେ ବୁଦ୍ଧଦେବଙ୍କ ଉକ୍ତି ଯଥା କେବଳ ଅହଂକାର ପାପର ଓ ସଂସାରର ମୂଳ, ପାପ ଜୀବନର ମୃତ୍ୟୁ, ପାପର ଅଭାବରେ ପୁଣ୍ୟର ଉଦୟ, ଧର୍ମ ମନୁଷ୍ୟୋତ୍ତର ଜ୍ଞାନର ଲକ୍ଷ୍ୟ, ଏହି ଚରମ । ଏପରି ଅବସ୍ଥା ଆସିଲେ ଦୁଃଖର ଅବସାନ ହୁଏ, ଦୁଃଖର ଅବସାନ ହେଲେ ଶାନ୍ତିର ଉଦୟରେ ମୁକ୍ତିବିଷୟକ ନିର୍ବାଣରୂପ ପରମ ତତ୍ତ୍ୱର ଆବିର୍ଭାବ ହୁଏ । ବୁଦ୍ଧ କହିଅଛନ୍ତି, ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟର ବାସନା ଅବିଦ୍ୟାର ଅଧୀନ ଥାଏ, ତେତେଦିନ ପର୍ଯ୍ୟନ୍ତ ଚିତ୍ତ ଦାବାନଳ ପ୍ରାପ୍ତ ପ୍ରଜ୍ୱଳିତ ହୋଇଥାଏ । ମନୁଷ୍ୟ ଯେତେ ସୁନ୍ଦର ଦୃଶ୍ୟ ଦେଖେ ବା ଅନୁଭବ କରେ, ତେତେ ତାହାର ଚିତ୍ତରେ ସୁଖସ୍ପୃହା ବଢିବାକୁ ଲାଗେ । ସୁଖସ୍ପୃହା ବଢିଲେ ବୈକାରିକ ଦୁଃଖ ମଧ୍ୟ ସୁଖରେ ଲିପ୍ତ ହୋଇଥାଏ । ଯେହି ସୁଖଦ୍ୱାରା ପରିଣାମରେ ଶୋକ ଓ ଯୋଗ୍ୟତାରେ ତପ୍ୟମାନ ହେବାକୁ ହୁଏ । ଯେଉଁ ମହାତ୍ମାମାନେ ଜ୍ଞାନମାର୍ଗରେ ପଦାର୍ପଣ କରିଥାନ୍ତି, ସେମାନେ ଅମୃତଜଳଦ୍ୱାରା ବାସନାରୂପ ଅଗ୍ନିକୁ ପ୍ରଜ୍ୱଳିତ ହେବାକୁ ଅବକାଶ ଦିଅନ୍ତି ନାହିଁ । ଏହା ପରେ ଅନ୍ତରିନ୍ଦ୍ରିୟ ସଂଯତ କରି

କ୍ରମଶଃ ଶାନ୍ତି ଲାଭ କରିଥାନ୍ତି । ଅନ୍ତର ପରିଶୁଦ୍ଧ ହେଲେ ଏହି ସମସ୍ତ ଦ୍ୱନ୍ଦ୍ୱ-ବିକାର ସେମାନଙ୍କ ମନକୁ ଉଦ୍‌ବେଳିତ କରି ପାରେ ନାହିଁ । ଯେପରି ଅଗ୍ନି କାଠ ନ ପାଇ ଆପେ ଆପେ ଲିଭିଯାଏ, ସେହିପରି ଜୀବର ତୃଷ୍ଣାବହ୍ନି ବିଷୟ ପରି ବିଭବରୂପ କାଠ ନ ପାଇ ଆପେ ଆପେ ନିର୍ବାପିତ ହୋଇଥାଏ । ବୁଦ୍ଧଙ୍କ ଉକ୍ତି "ନିର୍ବାଣଂ ପରମଂ ସୁଖଂ ।" ବୌଦ୍ଧମତରେ ସତ୍ୟ ଦର୍ଶନ ବା ଭ୍ରମତ୍ୟାଗ, ସାଧୁସଙ୍କଳ୍ପ ବା ଶୁଭଇଚ୍ଛା, ସତ୍ୟବାକ୍ୟ ବା ସଦ୍‌ବ୍ୟବହାର, କାର୍ଯ୍ୟ କର୍ମର ପରିତ୍ୟାଗ, ବ୍ୟାୟାମ, ଧ୍ୟାନ ଯୋଗାଦି ସ୍ମୃତି ଓ ସମାଧିଦ୍ୱାରା ନିର୍ବାଣ ଲାଭ ହୁଏ ।

ମୁକ୍ତି ସମ୍ବନ୍ଧରେ ପାତଞ୍ଜଳଦର୍ଶନ ଯଥା:—"ଅବିଶୁଦ୍ଧ୍ୟୈର୍ଜ୍ଞାନ-ଦୀପ୍ତିଃ ।" ଅର୍ଥାତ୍ ଚିତ୍ତର ଅଶୁଦ୍ଧତା ନଷ୍ଟ ହେଲେ ଜ୍ଞାନଶକ୍ତି ଉଦ୍ଦୀପିତ ହୁଏ । ଚିତ୍ତର କାମାଦି ଦୋଷ କ୍ଷୟପ୍ରାପ୍ତ ନ ହେବା ପର୍ଯ୍ୟନ୍ତ କାୟିକ, ବାଚିକ ଓ ମାନସିକ କର୍ମସଂସ୍କାର ହୁଏ ନାହିଁ । ନିଃଶକ୍ତି ନ ହେଲେ ଚିତ୍ତ ଭାବ୍ୟମାନ ପଦାର୍ଥରେ ସ୍ଥିରଲଗ୍ନ ହୁଏ ନାହିଁ ।

ସ୍ଥିରଲଗ୍ନ ହେଲେ ଭାବ୍ୟବସ୍ତୁର ନାମାଦି ବିସ୍ମରଣ ହୋଇ ଚିତ୍ତର ତନ୍ମୟାକାରତା ଦୃଢ଼ ହୋଇଥାଏ । ପୁନଶ୍ଚ ସୂତ୍ର ଯଥା: "ତସ୍ୟାପି ନିରୋଧେ ସର୍ବବୃତ୍ତିନିରୋଧାନ୍ ।" ଅର୍ଥାତ୍ ଚିତ୍ତର ତନ୍ମୟାକାରତା ପ୍ରାପ୍ତ ହେଲେ ସମ୍ପ୍ରଜ୍ଞାତା ବୃତ୍ତି ଲୁପ୍ତ ହୁଏ । ସର୍ବବୃତ୍ତି ନିରୋଧ ହେତୁ ସୁଖ, ଦୁଃଖ, ସ୍ମୃତି ଓ ସଂସ୍କାରାଦି ତିରୋହିତ ହୁଏ । ମହାରାଜ ! ଆପଣ ମୁକ୍ତି ସମ୍ବନ୍ଧରେ ଯେପରି ଭାବନ୍ତୁ, କାମନା ନିବୃତ୍ତି ପ୍ରଥମ ପ୍ରୟୋଜନ । କାମନା ନିବୃତ୍ତି ହେଲେ ଜନ୍ମ ନିବୃତ୍ତି ହୁଏ, ଜନ୍ମ ନିବୃତ୍ତି ହେଲେ ଶୋକ, ତାପ, ଜରା ଓ ମରଣର ଅବକାଶ ରହେ ନାହିଁ । ଫଳରେ ଯେଉଁମାନେ ଈଶ୍ୱରରୂପରେ ବିଶ୍ୱେଶ୍ୱର ଅବସ୍ଥିତ ବୋଲି ସ୍ୱୀକାର କରନ୍ତି, ସେମାନେ ବୋଲନ୍ତି, ଲୟରେ ବିଶ୍ୱର ଅଣୁ ପରମାଣୁରେ ଆପଣାର ଅଣୁ ଓ ପରମାଣୁ

ମିଳିଯାଏ । ଅଭି ଯେଉଁମାନେ ବର୍ଣ ବର୍ଣେର ସ୍ୱତନ୍ତ୍ର ବୋଲି ମନେ କରନ୍ତି, ଲୟରେ ସେମାନଙ୍କ ପଞ୍ଚଭୂତ ପଞ୍ଚଭୂତରେ ମିଳଲେ ଆତ୍ମାରେ ଅତ୍ମସମ୍ମିଳନ ହୋଇଥାଏ । ଜଡ଼ବାଦମାନେ ଜଡ଼ଦେହ ଜଡ଼ଦେହରେ ମିଳି ଯିବାର କହନ୍ତି । ଫଳରେ ଯେଉଁ ମତରେ ଦେଖ ଅତ୍ମାରେ ଅତ୍ମ-ସମ୍ମିଳନର ନାମ ମୋକ୍ଷ । ଅତଏବ ଅତ୍ମଜ୍ଞାନ ମୋକ୍ଷସାଧକ । ଯଥା ମନୁ—

"ସର୍ବେଷାମପି ଚୈତେଷାମାତ୍ମଜ୍ଞାନଂ ପରଂ ସ୍ମୃତଂ ।
ତଦ୍ଧ୍ୟଗ୍ର୍ୟଂ ସର୍ବବିଦ୍ୟାନାଂ ପ୍ରାପ୍ୟତେ ହ୍ୟମୃତଂ ତତଃ"

ଇତି ପ୍ରଥମ ପରିଚ୍ଛେଦ ସମାପ୍ତ ।

---

## ଦ୍ୱିତୀୟ ପରିଚ୍ଛେଦ ।



### ବେଦାନ୍ତ ଦର୍ଶନ ।

ରାଜା ଜନାର୍ଦ୍ଦନ--ମହାଭାଗ ! ମୁକ୍ତିର ବିଷୟ ଆଲୋଚନା ସକାଶେ ବେଦାନ୍ତାଦି ଦର୍ଶନର ସୃଷ୍ଟି ବୋଲି ଯାହାଙ୍କ କିମ୍ବଦନ୍ତୀ ଅଛି, ତାହାହିଁ ଯଦି ଯଥାର୍ଥ, ତେବେ ବେଦାନ୍ତର ସାର ସାର ବିଷୟ ଶୁଣାଇ କୃତାର୍ଥ କରିବା ହେବେ ।

ସାଧୁ ମହାରାଜ ! ବେଦାନ୍ତ ସୂତ୍ରର ବ୍ୟାଖ୍ୟାକର୍ତ୍ତା ଶଙ୍କରାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ ଓ ମାଧବାଚାର୍ଯ୍ୟପ୍ରମୁଖ ଭାଷ୍ୟକାରମାନେ ଅଦ୍ୱୈତ, ଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଶୁଦ୍ଧାଦ୍ୱୈତ ପ୍ରଭୃତି ବିବିଧଭାବର ଅନୁରୂପ ଉତ୍ଥାପନ କରି ଯାଇଅଛନ୍ତି । ଯାହାହେଉ, ଯେ ଯେଉଁ ନଦୀରେ ସ୍ନାନ କଲେ ମଧ୍ୟ ପରିଶେଷରେ ସମୁଦ୍ରରେ ମିଳିତ ହେବାକୁ ହୁଏ ।

ଅତଏବ ସମସ୍ତଙ୍କର ମୁଖ୍ୟ ଉଦ୍ଦେଶ୍ୟ ସେହି ନିଃଶ୍ରେୟସ ବା ଆତ୍ୟନ୍ତିକ ଦୁଃଖନିବୃତ୍ତି । ଶଙ୍କରାଚାର୍ଯ୍ୟପ୍ରମୁଖ ଅଦ୍ୱୈତବାଦୀମାନେ ଜୀବ ଓ ବ୍ରହ୍ମର ଅଭିନ୍ନତା ସମ୍ବନ୍ଧରେ ନିର୍ଣ୍ଣୟ କରିଅଛନ୍ତି ଯେ, ଜୀବ ଅବିଦ୍ୟା ବା ମାୟାର ଆବରଣରେ ଆବୃତ ହୋଇ ଆପଣାକୁ ବ୍ରହ୍ମରୁ ଭିନ୍ନ ବୋଲି ଭାବିଥାଏ, ମାତ୍ର ସଦ୍ଗୁରୁର କୃପାରୁ ଅବିଦ୍ୟା ଦୂର କରି ହୃଦୟ ମଧ୍ୟରେ ବ୍ରହ୍ମରୁ ଅଭିନ୍ନତା ଉଦୟ ହେବାର ନାମ ତତ୍ତ୍ୱଜ୍ଞାନ । ସେହି ତତ୍ତ୍ୱଜ୍ଞାନ ଲାଭାର୍ଥେ ସ୍ଥାନ ବିଶେଷ ବା ବ୍ୟକ୍ତି ବିଶେଷର ଆବଶ୍ୟକତା ନାହିଁ, କେବଳ ମନର ଦୃଢ଼ତା ଆବଶ୍ୟକ । ଅତଏବ ଉକ୍ତ ହୋଇଅଛି ଯଥା—

"ଲୋକୋ ନ କଶ୍ଚିତ୍ ପରତୋ ନ କଶ୍ଚିତ୍
ଯତୋ ଯତୋ ଯାମି ତତୋ ନ କଶ୍ଚିତ୍ ।
ବିଚାର୍ଯ୍ୟ ପଶ୍ୟାମି ଜଗନ୍ନ କଶ୍ଚିତ୍
ସ୍ୱାତ୍ମାବବୋଧାଦଧିକଂ ନ କଶ୍ଚିତ୍ ॥"

ମହାରାଜ ! ସେହି ତତ୍ତ୍ୱଜ୍ଞାନ ହୃଦୟ ମଧ୍ୟରେ ଜାଗରୂକ ହେଲେ ଅବିଦ୍ୟା ସ୍ୱୟଂ ଦୂର ହୁଏ । ସେହି ମାୟା ବା ଅବିଦ୍ୟା ଦୂର ହୋଇ ଜୀବ ଓ ବ୍ରହ୍ମର ଐକ୍ୟଭାବ ସାଧିତ ହେଲେ ଜୀବର ମୁକ୍ତିଲାଭ ହୋଇଥାଏ । ଜୀବର ଜ୍ଞାନୋଦୟ ହେଲେ "ସୋଽହଂ" "ବ୍ରହ୍ମାସ୍ମି" ଅର୍ଥାତ୍ ସେହି ଅଟେ, ଅମେ ମଧ୍ୟ ବ୍ରହ୍ମ, ଏହିରୂପ ବୁଝାଯାଏ । ଅତଏବ ଅଦ୍ୱୈତବାଦୀମାନେ ବ୍ରହ୍ମ ସତ୍, ଚିତ୍, ଆନନ୍ଦ, ନିତ୍ୟ, ଶୁଦ୍ଧ, ବୁଦ୍ଧ, ଅନାଦି ଓ ଅନନ୍ତ ବୋଲି "ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ" ଇତ୍ୟାଦି ଶ୍ରୁତିଦ୍ୱାରା ପ୍ରତିପନ୍ନ କରି ଯାଇଅଛନ୍ତି । ଜାଗତିକ ପଦାର୍ଥ ମଧ୍ୟରେ ଯେ କି ନାନା ନାମ ଓ ନାନା ରୂପର ଅନୁଭବ ତାହା ଭ୍ରମ ଅବିଦ୍ୟା ଓ ମାୟାର କାର୍ଯ୍ୟ । ମହାରାଜ ! ସାଂଖ୍ୟକାର ଯେପରି କି ପୁରୁଷ ନିର୍ଲିପ୍ତ ଓ ପ୍ରକୃତିର ବିକୃତି କେବଳ ସର୍ବ ପରିବର୍ତ୍ତନର ମୂଳାଧାର ବୋଲି ସ୍ୱୀକାର କରନ୍ତି, ସୃଷ୍ଟି ସମ୍ବନ୍ଧରେ

ବେଦାନ୍ତ ମତରେ ଅନେକାଂଶ ତାହାର ଅନୁରୂପ ବୋଲି ତତ୍ତ୍ୱଦର୍ଶୀମାନେ ସ୍ୱୀକାର କରନ୍ତି, ଅର୍ଥାତ୍ ପ୍ରକାରାନ୍ତରେ ପ୍ରକୃତିର ବିକୃତ ଭାବର ନାମ ମାୟା ବା ଅବିଦ୍ୟା । ଯାହାର ନାମ ଅଜ୍ଞାନ, ତାହାର ନାମ ଅବିଦ୍ୟା । ସେ ବ୍ରହ୍ମ ସେ ଜ୍ଞାନ, ଫଳରେ ଯେତେବେଳେ ଜୀବର ବ୍ରହ୍ମ ଭିନ୍ନ ବୋଲି ଜ୍ଞାନ ହୁଏ, ତେତେବେଳେ ଜୀବର ତାହାହିଁ ଅଜ୍ଞାନ । ଯେପରି କି ଏକ ପଦାର୍ଥ ଦର୍ପଣରେ, ଜଳରେ ଓ ସ୍ଫଟିକାଦି ନାନା ବସ୍ତୁରେ ପ୍ରତିବିମ୍ବିତ ହେଲେ ମଧ୍ୟ ପଦାର୍ଥର ନାନାତ୍ୱ ସମ୍ଭବପର ନୁହେଁ, ସେହିପରି ବ୍ରହ୍ମ ନାନା ଅବସ୍ଥାରେ ପ୍ରତୀତ ହେଲେ ମଧ୍ୟ ସେ କେବେହେଲେ ଏକ ଭିନ୍ନ ବହୁ ହୋଇ ନ ପାରେ । ଯାହାହେଉ ବ୍ରହ୍ମଜ୍ଞାନରେ ବସ୍ତୁଗତ ଭେଦ କିଛି ନାହିଁ, ମାତ୍ର ଘଟପଟାଦି ବିଷୟଗତ ଭେଦ ପ୍ରତିପନ୍ନ ହୋଇଥାଏ । ଯେଉଁମାନେ ଏହି ଭାବଗୁଡିକ ବୁଝିବାକୁ ଅକ୍ଷମ, ସେହିମାନେ ଅବିଦ୍ୟୋପହତ, ସେହି ଅବିଦ୍ୟୋପହତ ଜୀବ ମିଥ୍ୟାଜଗତକୁ ସତ୍ୟ ବୋଲି ମନେ କରିଥାଏ । ମିଥ୍ୟାଜଗତରେ ଜୀବର ଯାହା କି ସତ୍ୟତ୍ୱ ଜ୍ଞାନ, ତାହାହିଁ ଭ୍ରାନ୍ତି । ଏହି ଭ୍ରାନ୍ତି ଯେତେଦିନ ପର୍ଯ୍ୟନ୍ତ ଜୀବର ଦୂର ହୋଇ ନ ଥାଏ, ସେତେଦିନ ପର୍ଯ୍ୟନ୍ତ ସଂସାରବନ୍ଧନରେ ଆବଦ୍ଧ ଥାଏ, ତେତେଦିନ ପର୍ଯ୍ୟନ୍ତ ଜୀବର ମୁକ୍ତିମାର୍ଗ ଅବରୁଦ୍ଧ ଥାଏ । ତେତେଦିନ ପର୍ଯ୍ୟନ୍ତ ଜୀବ କର୍ମଯୋଗରେ ଇହସଂସାର ଭ୍ରମଣ କରୁଥାଏ । ଯେପରି କି ମେଘାଚ୍ଛନ୍ନ ହେଲେ ସୂର୍ଯ୍ୟମଣ୍ଡଳ ଦୃଷ୍ଟିଶକ୍ତିର ବହିର୍ଗତ ହୁଏ, ସେହିପରି ବ୍ରହ୍ମ ଅଜ୍ଞାନାନ୍ଧକାରରେ ଆଚ୍ଛନ୍ନ ହେଲେ ଜୀବ ତାହାର ସ୍ୱରୂପତତ୍ତ୍ୱ ବୁଝିବାକୁ ଅକ୍ଷମ ହୋଇ ପଡ଼େ । ଆଉ ମଧ୍ୟ ସୂର୍ଯ୍ୟମଣ୍ଡଳର କିୟଦଂଶ ମେଘଖଣ୍ଡଦ୍ୱାରା ଆଚ୍ଛନ୍ନ ହେବାର ଦେଖି ଅଜ୍ଞଜନ ମନେ କରେ, ମେଘ ସମୁଦାୟ ସୂର୍ଯ୍ୟମଣ୍ଡଳ ଆଚ୍ଛନ୍ନ କରିଅଛି । ଏହା ପରେ ଅଜ୍ଞଜନ ମେଘାଚ୍ଛନ୍ନ ଦେଖି ସୂର୍ଯ୍ୟ ପ୍ରଭାହୀନ ହୋଇବାର ଭାବିଥାଏ । ଏହି ଜ୍ଞାନ ଯେପରି ଭ୍ରାନ୍ତି, ମିଥ୍ୟା ଜଗତକୁ ସତ୍ୟ ବୋଲି ମନେ କରିବା ସେହିପରି ଭ୍ରାନ୍ତି । ଯଥା

"ଘନାଚ୍ଛନ୍ନଦୃଷ୍ଟିର୍ଘନାଚ୍ଛନ୍ନମର୍କଂ
ଯଥା ନିଷ୍ପ୍ରଭଂ ମନ୍ୟତେ ଗୃଢମୂଢ଼ଃ
ତଥା ବଦ୍ଧବଦ୍ଭାତି ଯୋମୂଢ଼ଦୃଷ୍ଟେଃ
ସ ନିତ୍ୟୋପଲବ୍ଧିଃ ସ୍ୱରୂପୋଽହମାତ୍ମା ।"

ଅର୍ଥାତ୍ ମେଘାଚ୍ଛନ୍ନଦୃଷ୍ଟି ମୂଢ଼ ବ୍ୟକ୍ତି ନିକଟରେ ସୂର୍ଯ୍ୟମଣ୍ଡଳ ଯେପରି ମେଘାଚ୍ଛାଦିତ ଓ ନିଷ୍ପ୍ରଭ ବୋଲି ମନେ ହୁଏ, ସେହିପରି ମୂଢ଼ ବ୍ୟକ୍ତି ଆପଣାଠାରେ ପରମାତ୍ମାର ଅଧିଷ୍ଠାନ ଥିଲେ ଅଜ୍ଞାନତାନିବନ୍ଧନ ସେ ଆପେ ଆପଣାକୁ ବଦ୍ଧ ବୋଲି ମନେ କରିଥାଏ । ଅତଏବ ଅଜ୍ଞାନତା ମୁକ୍ତିର ଅନ୍ତରାୟସାଧକ, ଫଳରେ ଯେପର୍ଯ୍ୟନ୍ତ ଅଜ୍ଞାନତା ଦୂର ହୋଇ ନ ଥାଏ ଓ ବ୍ରହ୍ମ ଭିନ୍ନ ଜଗତର ମିଥ୍ୟାତ୍ୱ ଜ୍ଞାନ ଦୃଢ଼ୀଭୂତ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ଜୀବ କର୍ମବନ୍ଧନରେ ପଡ଼ି ଘଟୀଚକ୍ରରେ ବୁଲୁଥାଏ । ଅଜ୍ଞାନର ଦୁଇ ଶକ୍ତି, ଆବରଣ ଶକ୍ତି ଓ ବିକ୍ଷେପ ଶକ୍ତି । ଅଜ୍ଞାନ ଜୀବକୁ ବେଷ୍ଟନ କରି ଆବରଣ ଶକ୍ତି ଦ୍ୱାରା ସ୍ୱରୂପତତ୍ତ୍ୱ ଆଚ୍ଛନ୍ନ କରିଥାଏ ଓ ବିକ୍ଷେପଶକ୍ତି ଦ୍ୱାରା ମିଥ୍ୟାବସ୍ତୁ କଳ୍ପନା କରିଥାଏ । ଯେଉଁ ସମୟରେ ମନୁଷ୍ୟ ରଜ୍ଜୁ ଦେଖି ସର୍ପଜ୍ଞାନରେ ଚମକି ଉଠେ ଓ ଶୁକ୍ତି ଦେଖି ରଜତ ବୋଲି ଧରି ପକାଏ, ସେତେବେଳେ ଅଜ୍ଞାନତାର ଆବରଣଶକ୍ତି ରଜ୍ଜୁର ସ୍ୱରୂପତତ୍ତ୍ୱ ଓ ଶୁକ୍ତିର ସ୍ୱରୂପତତ୍ତ୍ୱ ଆବରଣ କରି ରଖେ । ଏହା ପରେ ଅଜ୍ଞାନତାର ବିକ୍ଷେପଶକ୍ତି ରଜ୍ଜୁରେ ମିଥ୍ୟା ବସ୍ତୁ ସର୍ପଜ୍ଞାନର ଓ ଶୁକ୍ତିର ମିଥ୍ୟାବସ୍ତୁ ରଜତଜ୍ଞାନର କଳ୍ପନା କରିଦିଏ ।

ଅଭେଦଦୃଷ୍ଟାନ୍ତ—

କୌଣସି ଏକ ଶିଶୁର କଣ୍ଠରେ ମାଳି ହୋଇଥିଲାମାନ, ମାତ୍ର ଭ୍ରାନ୍ତିବଶରେ ତାହା ଅପହୃତ ହୋଇଥିବାର ମନେ କରି ଶିଶୁ ଚତୁର୍ଦ୍ଦିଗ ଅବଲୋକନପୂର୍ବକ ଖୋଜିବା ସମୟରେ କେହି ଯଦି ତାର ଦେଖାଇ

ହିଏ, ତେବେ କେବଳ ନିକଟସ୍ଥ ମାଳ ଦୂରସ୍ଥ ହୋଇଥିବା ମନେ କରି ଶିଶୁ ଯେପରି ଆନନ୍ଦ ଅନୁଭବ କରେ, ସେହିପରି ସଦ୍ଗୁରୁଙ୍କ ଉପଦେଶରେ ଯେଉଁ ଲୋକ ଆତ୍ମତତ୍ତ୍ୱ ଉପଲବ୍ଧି କରି ବୁଝିବାକୁ ସକ୍ଷମ ହୁଏ, ତାହାର ସେହି ଆନନ୍ଦ ଅନୁଭବ ହୋଇଥାଏ, ସେହି ଜୀବ ସେତେବେଳେ ଅବିଦ୍ୟା ଜାଲ ଛିନ୍ନ କରି ମୁକ୍ତ, ଶୁଦ୍ଧ, ବୁଦ୍ଧ ପୁରୁଷ ବୋଲାଏ ।

ଅନ୍ୟଦୃଷ୍ଟାନ୍ତ—

ସିଂହଶାବକ ମେଷଦଳରେ ମିଶି ଯଦି ଭ୍ରାନ୍ତିବଶରେ ଆପଣାକୁ ମେଷ ମନେ କରେ, ପରେ କେହି ସ୍ୱଚ୍ଛଜଳରେ ତାହାର ମୁଖ ଦେଖାଇ ଦେଲେ ଯେପରି କି ସିଂହଶାବକ ଆପଣାକୁ ମେଷ ବୋଲି ମନେ ନ କରି ଆପଣାର ସ୍ୱରୂପତତ୍ତ୍ୱ ବୁଝିଥାଏ, ସେହିପରି ସଦ୍ଗୁରୁଙ୍କ କୃପା ହେଲେ ଜୀବର ଭ୍ରାନ୍ତ ବୁଦ୍ଧି ଦୂର ହୋଇ ଆପଣାର ସ୍ୱରୂପତତ୍ତ୍ୱ ଉପଲବ୍ଧି ହୋଇଥାଏ ।

ମହାରାଜ ! ସାର କଥା ଏହି ଯେ, ଐନ୍ଦ୍ରଜାଲିକ ପ୍ରକ୍ରିୟା ଯେପରି କି ମିଥ୍ୟା ବସ୍ତୁକୁ ସତ୍ୟ ବୋଲି କଳ୍ପନା କରାଏ, ସେହିପରି ମନୁଷ୍ୟ ମାୟାବଶରେ ମିଥ୍ୟା ଜଗତକୁ ସତ୍ୟ ବୋଲି କଳ୍ପନା କରିଥାଏ ।

ବେଦାନ୍ତର ପ୍ରଥମ ସୂତ୍ରः—"ଅଥାତୋ ବ୍ରହ୍ମଜିଜ୍ଞାସା ।" ଏଠାରେ ଅଥ ଶବ୍ଦରେ ତାତ୍ପର୍ଯ୍ୟ, ଯେ କି ବ୍ରହ୍ମଜ୍ଞାନ ଲାଭର ଅଧିକାରୀ, ସେହି କେବଳ ତତ୍ତ୍ୱଜ୍ଞାନ ଲାଭ କରିବା ପକ୍ଷରେ ସକ୍ଷମ ହୋଇଥାଏ । ବ୍ରହ୍ମଜ୍ଞାନର ଅଧିକାରୀ ସମ୍ବନ୍ଧେ ଅଧିକାରୀର ଲକ୍ଷଣ ଯଥାः – "ବିଧିବଦଧୀତବେଦ-ବେଦାଙ୍ଗତ୍ୱେନାପାତତୋଽଧିଗତାଖିଳବେଦାର୍ଥୋଽସ୍ମିନ୍ ଜନ୍ମନି ଜନ୍ମାନ୍ତରେ ବା କାମ୍ୟନିଷିଦ୍ଧବର୍ଜ୍ଜନପୁରଃସରଂ ନିତ୍ୟନୈମିତ୍ତିକପ୍ରାୟଶ୍ଚିତ୍ତୋପାସନା-ନୁଷ୍ଠାନେନ ନିର୍ଗତନିଖିଳକଲ୍ମଷତୟା ନିତାନ୍ତ ନିର୍ମଳସ୍ୱାନ୍ତଃସାଧନଚତୁଷ୍ଟୟ-

ସମ୍ପନ୍ନଃ ପ୍ରମାତାଧିକାରୀ ।” ଅର୍ଥାତ୍ ଯେଉଁମାନେ ବିଧି ଅନୁସାରେ ଅଧ୍ୟୟନ କରି ବେଦ ଓ ବେଦାଙ୍ଗର ଅର୍ଥ ହୃଦୟଙ୍ଗମ କରିଥାନ୍ତି, ଯେଉଁମାନେ ଇହଜନ୍ମ ଅଥବା ଜନ୍ମାନ୍ତରରେ ସ୍ୱର୍ଗାଦିଜନକ ଯଜ୍ଞ ଓ ଦାନାଦି କାମ୍ୟକର୍ମ ସମାପନ କରିଥାନ୍ତି, ଯେଉଁମାନେ ନରକାଦିଜନକ ନିଷିଦ୍ଧ କର୍ମ ପରିବର୍ଜ୍ଜନ କରିଅଛନ୍ତି, ଯେଉଁମାନେ ନିତ୍ୟନୈମିତ୍ତିକ ସନ୍ଧ୍ୟା ବନ୍ଦନା ପ୍ରଭୃତି କର୍ମମାନ ଅନୁଷ୍ଠାନ କରନ୍ତି, ଯେଉଁମାନେ ସଗୁଣ ବ୍ରହ୍ମବିଷୟକ ମନନ ଓ ଉପାସନା ପ୍ରଭୃତିର ଅନୁଷ୍ଠାନରେ ନିଷ୍ଠାପୂର୍ବ୍ବକ ନିତାନ୍ତ ନିର୍ମଳଚିତ୍ତ ହୋଇ ଶମ ଦମାଦି ସାଧନଚତୁଷ୍ଟୟର ଅଭ୍ୟାସରେ ଅଭ୍ରାନ୍ତ ହୋଇ-ଅଛନ୍ତି, ସେହିମାନେ ବ୍ରହ୍ମଜ୍ଞାନ ଲାଭର ଅଧିକାରୀ ଅଟନ୍ତି । ଏଠାରେ ସାଧନ ଚାରି ପ୍ରକାର ଯଥା — ନିତ୍ୟାନିତ୍ୟବସ୍ତୁବିବେକ, ଇହାମୁତ୍ରଫଳ-ଭୋଗବିରାଗ, ଶମ ଦମାଦି ସମ୍ପତ୍ତି ଓ ମୁମୁକ୍ଷୁତ୍ୱ । ବ୍ରହ୍ମ ନିତ୍ୟ ଆଉ ଜଗତ୍ ମିଥ୍ୟା, ଏହିରୂପ ଦୃଢ଼ କଳ୍ପନାର ନାମ ନିତ୍ୟାନିତ୍ୟବସ୍ତୁବିବେକ । ସ୍ରକ୍ ଚନ୍ଦନ ବନିତାଦି ସମ୍ଭୋଗ ପ୍ରଭୃତି ଇହଲୌକିକ ସୁଖ ଓ ସ୍ୱର୍ଗାଦି-ଭୋଗରୂପ ପାରଲୌକିକ ସୁଖ ପ୍ରତି ଏକାନ୍ତ ବିତୃଷ୍ଣାର ନାମ ଇହାମୁତ୍ରଫଳ-ଭୋଗବିରାଗ । ଶମ ଦମ ଉପରତି ତିତିକ୍ଷା ସାଧନ ଓ ଶ୍ରଦ୍ଧା ଏହି ଷଡ଼୍ବିଧ ବିଷୟର ନାମ ଶମ ଦମାଦି ସମ୍ପତ୍ତି । ବ୍ରହ୍ମ ଭିନ୍ନ ଅନ୍ୟ ପଦାର୍ଥରୁ ମନ ନିବୃତ୍ତି କରିବାର ନାମ ଶମ । ବ୍ରହ୍ମ ଭିନ୍ନ ଅନ୍ୟ ବିଷୟରୁ ବାହ୍ୟେନ୍ଦ୍ରିୟ ନିବୃତ୍ତିର ନାମ ଦମ । ବିଧିପୂର୍ବ୍ବକ ବିହିତ କର୍ମ ପରିତ୍ୟାଗ କରିବାର ନାମ ଉପରତି । ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ସହିଷ୍ଣୁତାର ନାମ ତିତିକ୍ଷା । ଇନ୍ଦ୍ରିୟାଦି ନିଗ୍ରହଦ୍ୱାରା ବ୍ରହ୍ମ ବିଷୟରେ ମନୋନିବେଶର ନାମ ସମାଧାନ । ଗୁରୁ ଓ ବେଦାନ୍ତାଦି ଧର୍ମକାର୍ଯ୍ୟରେ ବିଶ୍ୱାସର ନାମ ଶ୍ରଦ୍ଧା । ମୁକ୍ତିଲାଭରେ ଐକାନ୍ତିକ ଇଚ୍ଛାର ନାମ ମୁମୁକ୍ଷୁତ୍ୱ । ଅତଏବ ସାଧନଚତୁଷ୍ଟୟ ରୂପ ବିବିଧ ସୋପାନ ଅତିକ୍ରମ-ପୂର୍ବ୍ବକ ଅଧିକାରୀ ଜନ୍ମିଲେ ଜ୍ଞାନକାଣ୍ଡାତ୍ମକ ବେଦାନ୍ତ ଶାସ୍ତ୍ର ଆଲୋଚନା କରୁ କରୁ ଜୀବ ବ୍ରହ୍ମଜ୍ଞାନ ଲାଭରେ ସକ୍ଷମ ହୋଇଥାଏ ।

ମହାରାଜ ! ଅଦ୍ୱୈତବାଦୀମାନେ ବ୍ରହ୍ମ ଭିନ୍ନ ଅନ୍ୟ ପଦାର୍ଥର ବସ୍ତୁମାନ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି, ବ୍ରହ୍ମ ଭିନ୍ନ ସମସ୍ତ ମିଥ୍ୟା । ଜଗତ୍ ବୋଲି ଯାହା କି ପ୍ରତୀତ ହେଉଅଛି, ତାହା ବ୍ରହ୍ମର ରୂପଭେଦ ଓ ନାମଭେଦ ମାତ୍ର । ତହିଁରେ ବସ୍ତୁତଃ ପ୍ରଭେଦ କିଛିମାତ୍ର ନାହିଁ । ଯାହା କି ସ୍ୱତନ୍ତ୍ର ବୋଲି ମନେ ହୁଏ, ତାହା ଭ୍ରମ ବା ମାୟା ଅର୍ଥାତ୍ ରଜ୍ଜୁରେ ସର୍ପଭ୍ରମ, ଶୁକ୍ତିରେ ମୁକ୍ତାଭ୍ରମ, ମରୀଚିକାରେ ଜଳଭ୍ରମ ମାତ୍ର । ସାର କଥା ଏହି ଯେ, ଯେପରି କି କୁଣ୍ଡଳ ବଳୟାଦି ସ୍ୱର୍ଣ୍ଣାଳଙ୍କାରମାନ ସ୍ଥୂଳ ଦୃଷ୍ଟିରେ ବିଭିନ୍ନ ପଦାର୍ଥ ବୋଲି ପ୍ରତୀୟମାନ ହୁଏ, ବସ୍ତୁତଃ ତାହା ସ୍ୱର୍ଣ୍ଣର ବିକାର ମାତ୍ର । ସେହିପରି ଜାଗତିକ ପଦାର୍ଥ ମାନର ଯାହା କି ନାନା ନାମ ଓ ନାନା ରୂପର କଳ୍ପନା, ତାହା ବସ୍ତୁତଃ ବ୍ରହ୍ମରୁ ଭିନ୍ନ ନୁହେ, ସୁତରାଂ ଯେପରି କି ଅଳଙ୍କାର ସହିତ ସ୍ୱର୍ଣ୍ଣର ପ୍ରଭେଦ, ସେହିପରି ଜଗତର ବ୍ରହ୍ମ ସହିତ ସମ୍ବନ୍ଧଗତ ପ୍ରଭେଦ ମାତ୍ର । ସାର କଥା ଏହି ଯେ, ଆପଣାର ସ୍ୱରୂପତତ୍ତ୍ୱ ଜୀବ ବୁଝି ନ ପାରି ଯେତେ ଦିନ ପର୍ଯ୍ୟନ୍ତ ମାୟା ବା ଅଜ୍ଞାନତାଚ୍ଛନ୍ନ, ସେତେଦିନ ପର୍ଯ୍ୟନ୍ତ ତାହାର ଦୁଃଖ ଭୋଗ ଓ ସେତେଦିନ ପର୍ଯ୍ୟନ୍ତ ସଂସାରସମୁଦ୍ରରେ ଡୁବେଇ ଉବେଇ ହେଉଥାଏ । ସେହି ଅଜ୍ଞାନତା ଦୂର କରି ପାରିଲେ ଜୀବର ବ୍ରହ୍ମତ୍ୱ ପ୍ରାପ୍ତି ହୁଏ । ମହାରାଜ ! ଏଥିରୁ ଜଣାଗଲା ଯେ, ଆତ୍ମସାକ୍ଷାତ୍କାର ରୂପ ତତ୍ତ୍ୱଜ୍ଞାନ ମୋକ୍ଷଲାଭର ମୁଖ୍ୟ ଉପାୟ । ବ୍ରହ୍ମଜ୍ଞାନ ସକାଶେ ସାଧନର ଆବଶ୍ୟକ । ସାଧନ ଚାରି ପ୍ରକାର, ଯଥା: — ଶ୍ରବଣ, ମନନ, ନିଦିଧ୍ୟାସନ ଓ ସମାଧି । ଶ୍ରୁତି ବାକ୍ୟ ଶ୍ରବଣରେ ବ୍ରହ୍ମର ତାତ୍ପର୍ଯ୍ୟାବଧାରଣର ନାମ ଶ୍ରବଣ । ଦର୍ଶନଶାସ୍ତ୍ରବିହିତ ଯୁକ୍ତିଦ୍ୱାରା ନିରନ୍ତର ପରଂବ୍ରହ୍ମ ଚିନ୍ତନର ନାମ ମନନ । ଦେହାଦିବୁଦ୍ଧି ପରିତ୍ୟାଗପୂର୍ବକ ଏକାଗ୍ରଚିତ୍ତରେ ଅଦ୍ୱିତୀୟ ବ୍ରହ୍ମର ଯେ ନିରନ୍ତର ଧ୍ୟାନ, ତାହାର ନାମ ନିଦିଧ୍ୟାସନ । ଚିତ୍ତର ନିରୋଧ ବା ଏକାଗ୍ରତାର ନାମ ସମାଧି । ଅର୍ଥାତ୍ ଧ୍ୟାନ ଧାରଣା ଓ ନିଦିଧ୍ୟାସନର

ଅନୁଷ୍ଠାନରେ ଚିତ୍ତ ଏକମାତ୍ର ବ୍ରହ୍ମରେ ଲୀନ ହେବାର ନାମ ଚିତ୍ତୈକାଗ୍ରତା । ଅତଏବ ଶ୍ରବଣ ମନନାଦଦ୍ୱାରା ଭେଦଜ୍ଞାନ ଦୂର ହେବାର ମୁକ୍ତି ।

ମହାରାଜ ! ଅଦ୍ୱୈତବାଦମାନେ ସତ୍ୟ ଓ ମିଥ୍ୟାର ବିବିଧ ଲକ୍ଷଣ ନିର୍ଦ୍ଦେଶ କରିଅଛନ୍ତି । ଯଥା:—ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ତିନି କାଳରେ ଅବସ୍ଥିତ ଯେ କି ନିର୍ବାଧ, ତାହାର ନାମ ସତ୍ୟ । ଯାହା କି ପରିବର୍ତ୍ତନଶୀଳ, ଯହିଁରେ ବାଧା ବା କ୍ରମଭଙ୍ଗ ଅଛି, ତାହାର ନାମ ଅସତ୍ୟ ବା ମିଥ୍ୟା । ସତ୍ୟର ସମ୍ବନ୍ଧରେ ଭାଷ୍ୟକାର—"ଏକରୂପେଣ ହ୍ୟବସ୍ଥିତୋ ଯୋଽର୍ଥଃ ସପରମାର୍ଥଃ" ଅର୍ଥାତ୍ ଯାହା କି ସବୁ କାଳରେ ଓ ସବୁ ଅବସ୍ଥାରେ ଏକଭାବରେ ଅବସ୍ଥିତ, ତାହାହିଁ ପରମାର୍ଥ । ଅତଏବ ଦୃଶ୍ୟତ୍ୱ ଜଡ଼ତ୍ୱ ଓ ପରିଚ୍ଛିନ୍ନତ୍ୱାଦଦ୍ୱାରା ଜଗତରେ ମିଥ୍ୟାତ୍ୱ ପ୍ରତିପନ୍ନ କରିଅଛନ୍ତି । ସୁତରାଂ ଯାହା କି ଜଡ଼, ଦୃଶ୍ୟ ଓ ପରିଚ୍ଛିନ୍ନ, ସେହି ସମସ୍ତ ମିଥ୍ୟା । ଅତଏବ ଜଗତ୍ ବୋଲି ଯାହା କି ପ୍ରତୀତ ହେଉଅଛି, ସେ ମଧ୍ୟ ମିଥ୍ୟା । ଅଦ୍ୱୈତ ସିଦ୍ଧିକାର "ବ୍ରହ୍ମପ୍ରମାତିରିକ୍ତାବାଧତ୍ୱେ ସତି ସତ୍ତ୍ୱେନ ପ୍ରତୀତ୍ୟର୍ହ ଚିଦ୍ଭିନ୍ନଂ ପ୍ରତିପନ୍ନୋପାଧୌ ତ୍ରୈକାଳିକନିଷେଧପ୍ରତିଯୋଗିତ୍ୱଂ ମିଥ୍ୟାତ୍ୱଂ" ଏହିରୂପ ପାଞ୍ଚ ଗୋଟି ଲକ୍ଷଣ ନିର୍ଦ୍ଦେଶ କରି ଯାଇଅଛନ୍ତି । ସ୍ଥୂଳତଃ ଯାହା କି ଆଜି ଅଛି, କାଲି ନାହିଁ ଓ ବର୍ତ୍ତମାନ କ୍ଷଣରେ ଅଛି, ଅପର କ୍ଷଣରେ ନାହିଁ, ସେ ସବୁ ମିଥ୍ୟା । ଭାବ ଚିନ୍ତା ସ୍ଥିର କଲେ ବ୍ରହ୍ମ ଭିନ୍ନ ସମସ୍ତ ମିଥ୍ୟା । ଜୀବର ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ ସେହି ଅବସ୍ଥାମାନଙ୍କରେ ଯାହାର କୌଣସି ସମୟରେ ବୈଲକ୍ଷଣ୍ୟ ଦୃଷ୍ଟ ହୁଏ ନାହିଁ, ଯାହା କି ସବୁ କାଳରେ ଓ ସବୁ ଅବସ୍ଥାରେ ଏକରୂପରେ ପ୍ରତୀୟମାନ ହୁଏ, ତାହା ସତ୍ୟ ଓ ତାହା ବ୍ରହ୍ମ । ବ୍ରହ୍ମ ଭିନ୍ନ ସମସ୍ତ ମିଥ୍ୟା ବା ମାୟା । ତହିଁ ସୂତ୍ର— "ତଦନନ୍ୟତ୍ୱମାରମ୍ଭଣଶବ୍ଦାଦିଭ୍ୟଃ ।" ଭାଷ୍ୟାର୍ଥଃ—ବ୍ରହ୍ମବ୍ୟତିରେକେଣ କାର୍ଯ୍ୟଜାତସ୍ୟ ଅଭାବଃ ବିକାରଜାତସ୍ୟ ଅନୃତାଭିଧା-

ନାହିଁ । ଅର୍ଥାତ୍ ବ୍ରହ୍ମ ବ୍ୟତୀତ କାର୍ଯ୍ୟ ହୁଏ ନାହିଁ । ଯେହେତୁ କାର୍ଯ୍ୟ ମାତ୍ର ମିଥ୍ୟାଜ୍ଞାନବିଜୃମ୍ଭିତ । "ବାଗାରମ୍ଭଣଂ ବିକାରନାମଧେୟଂ ମୃତ୍ତିକା ଇତ୍ୟେବ ସତ୍ୟଂ" ଇତ୍ୟାଦି ଶ୍ରୁତିବାକ୍ୟରେ ଜଗତ୍ ଓ ବ୍ରହ୍ମର ଅଭିନ୍ନତ୍ୱ ସୂଚିତ ହୋଇଅଛି । ଯଥା— "ଏକସ୍ମାଦେବ ମୃତ୍ପିଣ୍ଡୋପାଦାନାତ୍ ଜାତଂ ଘଟାଦିସର୍ବଂ ତେନୈବ ବିଜ୍ଞାତଂ ସ୍ୟାତ୍ ତସ୍ୟ ତତୋଽନତିରେକାତ୍ ।" ଅର୍ଥାତ୍ ଏକମାତ୍ର ମୃତ୍ପିଣ୍ଡରୂପ ଉପାଦାନରୁ ଘଟାଦି ବସ୍ତୁ ଉତ୍ପନ୍ନ ହୁଏ । ସୁତରାଂ ମୃତ୍ତିକାକୁ ଜାଣିଲେ ଘଟାଦି ଜଣାଯାଏ । ଯାହାହେଉ ବୁଦ୍ଧି ଓ ଶବ୍ଦର ତାରତମ୍ୟ ମାତ୍ର; କିନ୍ତୁ ଉପାଦାନ ଓ ଉପାଦେୟ ଭିନ୍ନ ନୁହେ । ଯେପରି କି ମୃତ୍ପିଣ୍ଡର କମ୍ବୁଗ୍ରୀବାଦିମତ୍ତ୍ୱରୂପ ସଂଘଟିତ ହେଲେ ବ୍ୟବହାର ସକାଶେ ତାହାର ଘଟାଦି ନାମାନ୍ତର ହୋଇଥାଏ । ବସ୍ତୁତଃ ମୃତ୍ତିକାହିଁ ସତ୍ୟ । ଆଉ ମଧ୍ୟ ମୃତ୍ତିକା ଓ ଘଟର ବିଶେଷ କିଛି ବିଭିନ୍ନତା ଯେପରି ଲକ୍ଷିତ ହେଉ ନାହିଁ, ସେହିପରି ଜୀବ ଓ ବ୍ରହ୍ମର ଅଭିନ୍ନତା ପ୍ରତିପନ୍ନ ହୋଇଥାଏ । ମହାରାଜ ! ଯେପରି କି ମୃତ୍ତିକାର ରୂପାନ୍ତର ବା ବିକାରରେ ଘଟାଦି ଉତ୍ପନ୍ନ ହୋଇ ସୁଦ୍ଧା ପରିଣାମର ତାରତମ୍ୟ ନାହିଁ, ସେହିପରି ବ୍ରହ୍ମ ଓ ଜଗତ୍ ଅଭିନ୍ନ ଅର୍ଥାତ୍ ଏକର ବିକାରରେ ଅନ୍ୟର ଉତ୍ପତ୍ତି, ଏହି କେବଳ ନାନା ଦୃଷ୍ଟାନ୍ତଦ୍ୱାରା ବେଦାନ୍ତର ମୁଖ୍ୟ ପ୍ରତିପାଦ୍ୟ । ଅତଏବ ବ୍ରହ୍ମ ଓ ବ୍ରହ୍ମାଣ୍ଡର ଏକତ୍ୱ ପ୍ରତିପାଦନ କରିବା କେବଳ ଅଦ୍ୱୈତ ସିଦ୍ଧାନ୍ତ । ଯଥା "ଏକ ଏବ ଭୂତାତ୍ମା ସର୍ବଭୂତେ ବ୍ୟବସ୍ଥିତଃ ।" ଯେପରି କି ଭିନ୍ନ ଭିନ୍ନ ଜଳାଶୟରେ ଚନ୍ଦ୍ର ପ୍ରତିବିମ୍ବିତ ହେଲେ ଭିନ୍ନ ଭିନ୍ନ ଆକାରରେ ପ୍ରତୀୟମାନ ହେଲେ ମଧ୍ୟ ତାହା ଏକ ଭିନ୍ନ ଦ୍ୱିତୀୟ ନୁହେ । ଯାହା କି ଅନ୍ୟରୂପ ପ୍ରତୀତ ହେଉଅଛି, ତାହା ଭ୍ରମ ବା ମାୟା । "ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ" ଏହି ଶ୍ରୁତିରୁ ବ୍ରହ୍ମର କୌଣସି କର୍ମ କର୍ତ୍ତୃତ୍ୱ ସୂଚିତ ହେଉ ନାହିଁ, ମାତ୍ର ସ୍ୱରୂପ ଲକ୍ଷଣ ପ୍ରକାଶ ପାଉଅଛି । ଅର୍ଥାତ୍ ବ୍ରହ୍ମ ସତ୍ୟସ୍ୱରୂପ ଓ ଜ୍ଞାନସ୍ୱରୂପ । "ଯତୋ ବା

ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି” ଇତ୍ୟାଦି ଶ୍ରୁତିରୁ ଯାହା କି ବ୍ରହ୍ମର କର୍ତ୍ତୃତ୍ୱାଦି ସୂଚିତ ହୋଇଅଛି, ତାହାହିଁ ତଟସ୍ଥ ଲକ୍ଷଣ । ଏଣୁ ଅଦ୍ୱୈତବାଦମାନେ “ଜନ୍ମାଦ୍ୟସ୍ୟ ଯତଃ” ଏହି ବ୍ୟାସସୂତ୍ରକୁ ତଟସ୍ଥ ଲକ୍ଷଣ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଯାହାଠାରୁ ଜଗତର ଜନ୍ମାଦି ଅର୍ଥାତ୍ ସୃଷ୍ଟି, ସ୍ଥିତି ଓ ପ୍ରଳୟ ସାଧିତ ହୋଇଅଛି, ସେହି କେବଳ ସତ୍, ଚିତ୍ ଓ ବ୍ରହ୍ମ, ଆଉ ସବୁ ତାହାର ବିକାର ବା ମାୟା । ଯେତେବେଳେ ଜୀବ ବ୍ରହ୍ମକୁ ଅଭିନ୍ନ ବୋଲି ମନେ କରିଥାଏ, ସେତେବେଳେ ଜୀବର ଉପାସନାପ୍ରଥା ମଧ୍ୟ ସ୍ୱତନ୍ତ୍ର, ଅତଏବ ଅଦ୍ୱୈତବାଦମାନେ ଉପାସ୍ୟ ଓ ଉପାସକ ଭାବରେ, ସେବ୍ୟ ଓ ସେବକ ଭାବରେ ଭକ୍ତ ଓ ଭଜନୀୟରୂପେ ବ୍ରହ୍ମ ସହିତ କୌଣସି ସମ୍ବନ୍ଧ ରଖନ୍ତି ନାହିଁ । ଏହି ଅଦ୍ୱୈତ ମତରେ ଉପାସନା - ଅହଂ ବ୍ରହ୍ମରୁ ଅଭିନ୍ନ ଅର୍ଥାତ୍ ସୋଽହଂ ଭାବ, ବ୍ରହ୍ମାସ୍ମି ଇତ୍ୟାଦି ପରିଚିନ୍ତନ ମାତ୍ର । ତଥି ସୂତ୍ର—“ଆତ୍ମେତ୍ୟୁପଗଚ୍ଛନ୍ତି ଗ୍ରାହୟନ୍ତି ଚ ।” ତାହାର ଭାଷ୍ୟ-ଆତ୍ମେତ୍ୟେବ ପରମେଶ୍ୱରଃ ପ୍ରତିପତ୍ତବ୍ୟଃ । ଅର୍ଥାତ୍ ଆତ୍ମା ପରମେଶ୍ୱର ବୋଲି ମନେ କରିବାର ନାମ ଉପାସନା । ତଥି ଶ୍ରୁତି— “ତଂ ଯଥାଯଥୋପାସତେ ତଦେବ ଭବତି” ଅର୍ଥାତ୍ ଯେ ଯେଉଁ ଭାବରେ ଉପାସନା କରେ, ସେ ସେହି ଭାବ ପ୍ରାପ୍ତ ହୋଇଥାଏ । ଯେପରି କି ପଦ୍ମପତ୍ରରେ ଜଳର ସମ୍ପର୍କ ରହେ ନାହିଁ, ସେହିପରି ତତ୍ତ୍ୱ-ଜ୍ଞାନଠାରେ ପାପ ମଧ୍ୟ ସ୍ପର୍ଶ କରେ ନାହିଁ । ଯଥା ଗୀତା—“ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେଽର୍ଜୁନ ।” ଅଭିନ୍ନତା ସମ୍ବନ୍ଧରେ ଅପର ଶ୍ରୁତି, ଯଥା :—“ନଦୀସମୁଦ୍ରାଦିବନ୍ନିର୍ଦ୍ଦର୍ଶନାନ୍ନ ଚ” ଅର୍ଥାତ୍ ନଦୀ ସମୁଦ୍ରରେ ମିଳିତ ହେଲେ ଯେରୂପ ତାହାର ନାମ ରୂପାଦି ସମସ୍ତ ସମୁଦ୍ରରେ ଲୀନ ହୁଏ, ସେହିପରି ବ୍ରହ୍ମରେ ଜୀବ ଲୀନ ହେଲେ ତାହାର ନାମ ରୂପାଦି ସମସ୍ତ ଲୟ ପ୍ରାପ୍ତ ହୋଇଥାଏ ।

ଇତି ଅଦ୍ୱୈତବାଦ ସମାପ୍ତ ।

---

## ଅଥ ଦ୍ୱୈତବାଦ ।

ରାଜା ଜନାର୍ଦ୍ଦନ—ମହାଭାଗ ! ଆଉ ବିଶେଷ କିଛୁ ଅଦ୍ୱୈତ ମତ ନ ବୋଲି ଦ୍ୱୈତ ମତ ଶୁଣାଇଲେ କୃତାର୍ଥ ହେବି ।

ସାଧୁ— ମହାରାଜ ! ଯାହା କି ଇତପୂର୍ବେ ଆମ୍ଭେ ଅଦ୍ୱୈତବାଦର ବିଷୟ ବ୍ୟକ୍ତ କଲୁଁ, ତାହା ମଧ୍ୟ ପାରମାର୍ଥିକୀ ଅବସ୍ଥା ଭିନ୍ନ ବ୍ୟାବହାରିକୀ ଅବସ୍ଥାର କାର୍ଯ୍ୟ ନୁହେ, ଆଉ ମଧ୍ୟ ଅଦ୍ୱୈତବାଦ ବହୁଦର୍ଶିତା ଓ ଦୂରଦର୍ଶିତାର କାର୍ଯ୍ୟ । ଏଣୁ ଆପଣମାନେ ଦ୍ୱୈତମତାବଲମ୍ବୀ ହୋଇ ପ୍ରତିମାଦିର ପୂଜା କରିବା ଶ୍ରେୟ । ଯାହାହେଉ ଦ୍ୱୈତବାଦୀମାନେ ଜୀବ ଓ ବ୍ରହ୍ମର ଅଶେଷ ପାର୍ଥକ୍ୟ ଦେଖାଇ ଯାଇଅଛନ୍ତି । ଯଥା : ଜୀବ ଉପାସକ, ସେବକ ଓ ଭକ୍ତ; ବ୍ରହ୍ମ ଉପାସ୍ୟ, ସେବ୍ୟ ଓ ଭଜନୀୟ; ସୁତରାଂ ଜୀବ ଓ ବ୍ରହ୍ମ ଏକ ନୁହେ । ଏହି ପରିଦୃଶ୍ୟମାନ ଜଗତ୍ ଯାହାଠାରୁ ଉତ୍ପନ୍ନ ହୋଇଅଛି, ସେହି କେବଳ ବ୍ରହ୍ମ, ଆଉ ସମସ୍ତ ତାହାର କର୍ତ୍ତୃତ୍ୱାଧୀନ । ଏଣୁ କର୍ତ୍ତା ଓ କାର୍ଯ୍ୟ ଏକ ହୋଇ ପାରେ କି ? ଯାହାହେଉ ସାଧନାଦିଦ୍ୱାରା ଜୀବ ଗୁଣସମ୍ପନ୍ନ ହୋଇ ମୁକ୍ତିର ଅଧିକାରୀ ହୁଏ । ଅଧିକାରୀ ହେଲେ ମୁକ୍ତପୁରୁଷର ସକଳ ସିଦ୍ଧ ହୋଇ କ୍ଷମତା ଲାଭ ହୁଏ । ଯେପରି କି ସୁଖୋନ୍ମତ୍ତ ବ୍ୟକ୍ତିମାନେ ଫଳାଫଳ ବିବେଚନା ନ କରି ନୃତ୍ୟାଦିରେ ପ୍ରବୃତ୍ତ ହୋଇଥାନ୍ତି, ସେହିପରି ଲୀଳାବଶତଃ ଈଶ୍ୱର ସୃଷ୍ଟି କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି । ଅତଏବ ଦୁଗ୍ଧ ଓ ଜଳର ବିକାରରେ ଯେରୂପ ଦଧି ଓ ବରଫ ଉତ୍ପନ୍ନ ହୁଏ, ଜଗତର ସୃଷ୍ଟି ତଦ୍ରୂପ ବିକାରଲୀଳା ମାତ୍ର । ନଦୀ ଓ ସମୁଦ୍ରର ଜଳ ଦୃଷ୍ଟତଃ ଅଭିନ୍ନ ବୋଲି ମନେ ହୁଏ, ମାତ୍ର ତହିଁରେ ବିବିଧ ଭେଦ ପରିଲକ୍ଷିତ ହୋଇଥାଏ । ଯଥା :—ନଦୀଜଳ ବିଶୁଦ୍ଧ, ସମୁଦ୍ରଜଳ ଲବଣାକ୍ତ, ନଦୀ କ୍ଷୁଦ୍ର, ସୀମାବିଶିଷ୍ଟ, ସମୁଦ୍ର ଅସୀମ ଓ ଅନନ୍ତ । ସେତେବେଳେ ନଦୀ ସମୁଦ୍ରରେ

ମିଳିତ ହୁଏ, ସେତେବେଳେ ନଦୀର ଇତରବିଶେଷ ବୁଝାଯାଏ ନାହିଁ ସତ୍ୟ, କିନ୍ତୁ ବସ୍ତୁଗତ ଜଳ ମଧ୍ୟରେ ବିଶୁଦ୍ଧତା ଓ ଲବଣାକ୍ତତାର କିଛି ହେଲେ ପ୍ରଭେଦ ଥାଏ । ଜୀବ ଓ ଈଶ୍ୱର ସମ୍ବନ୍ଧରେ ଠିକ୍ ସେହିରୂପ । ମହାପ୍ରଳୟରେ ଜୀବ ପରଂବ୍ରହ୍ମରେ ଲୀନ ହେଲେ ମଧ୍ୟ ଅବଶ୍ୟ ଉଭୟର କିଛି ହେଲେ ପାର୍ଥକ୍ୟ ଥାଏ । ଯେପରି କି ଦୁଗ୍ଧ ଜଳରେ ମିଶ୍ରିତ ହେଲେ ତାହାର ପାର୍ଥକ୍ୟ ଅନୁଭୂତ ହୁଏ ନାହିଁ, ମାତ୍ର ହଂସଗଣ ସେ ପାର୍ଥକ୍ୟ ଭେଦ କରି ଅନାୟାସରେ ଜଳ ତ୍ୟାଗପୂର୍ବକ ଦୁଗ୍ଧ ପାନ କରିଥାନ୍ତି; ଅତଏବ ଯେପରି କି ଜଳ ଓ ଦୁଗ୍ଧର ପ୍ରଭେଦ ହଂସ ବାରି ଦିଏ, ସେହିପରି ସଦ୍‌ଗୁରୁର ଉପଦେଶ ପ୍ରାପ୍ତ ହୋଇ ଜୀବ ଓ ବ୍ରହ୍ମର ପାର୍ଥକ୍ୟ ଉପଲବ୍ଧି କରିବା ପକ୍ଷରେ ସକ୍ଷମ ହୋଇଥାଏ । ସେତେ-ବେଳେ ଜୀବ ଆପଣାକୁ ସେବକ, ପୂଜକ ଓ ଭକ୍ତ ବୋଲି ଏବଂ ବ୍ରହ୍ମକୁ ସେବ୍ୟ, ପୂଜ୍ୟ ଓ ଭଜନୀୟ ବୋଲି ବୁଝିଥାଏ । ଜୀବ ଯେତେବେଳେ ସେବକ, ପୂଜକ ଓ ଭକ୍ତ ଭାବ ବ୍ରହ୍ମର ଉପାସନାରେ ପ୍ରବୃତ୍ତ ହୁଏ, ସେତେବେଳେ ଜୀବର ଦୁଃଖଭାର ଅବସାନ ହୁଏ ଓ ଜୀବ ଆପଣାକୁ ଭକ୍ତ ମନେ କରି ଈଶ୍ୱରଭଜନାଦ୍ୱାରା ମୁକ୍ତିଲାଭ କରେ ।

ମହାରାଜ ! ରାମାନୁଜାଚାର୍ଯ୍ୟ ବେଦାନ୍ତଦର୍ଶନର ତୃତୀୟ ଅଧ୍ୟାୟ, ଦ୍ୱିତୀୟ ପାଦ, ଚତୁର୍ଦ୍ଦଶାଦି ସୂତ୍ରର ଭାଷ୍ୟପ୍ରସଙ୍ଗରେ ଅଦ୍ୱୈତମତ ଖଣ୍ଡନ-ପୂର୍ବକ ବୋଲିଅଛନ୍ତି, 'ଜୀବ ଆଧ୍ୟାତ୍ମିକାଦି ଦୁଃଖତ୍ରୟର ଅଧୀନ ଓ ବ୍ରହ୍ମ ଦୁଃଖର ଅତୀତ । ସୁତରାଂ ଜୀବ ଓ ବ୍ରହ୍ମ ଏକ ହୋଇ ନ ପାରେ ।' ସେଠାରେ ଶ୍ରୁତିଦୃଷ୍ଟାନ୍ତ ଯଥା—"ସ କାରଣଂ କାରଣାଧିପାଧିପ ଯ ଆତ୍ମନି ତିଷ୍ଠନ୍", ଅର୍ଥାତ୍ ସେ କାରଣ ଓ କାରଣାଧିପତି ଜୀବର ଅଧିପତି, ସେ ଆତ୍ମା ଓ ଆତ୍ମାରେ ଅଧିଷ୍ଠିତ ଇତ୍ୟାଦି ଶ୍ରୁତିଦ୍ୱାରା ସ୍ରଷ୍ଟା ଓ ସୃଷ୍ଟିର, ଜୀବ ଓ ବ୍ରହ୍ମର ପ୍ରଭେଦ ଦେଖାଇଅଛନ୍ତି । ଅଦ୍ୱୈତବାଦୀ ଶଙ୍କରାଚାର୍ଯ୍ୟପ୍ରମୁଖ

ପଣ୍ଡିତମାନେ ଯେଉଁ ଯେଉଁ ଶ୍ରୁତି ଓ ଦୃଷ୍ଟାନ୍ତବଳରେ ପ୍ରକୃତିର ବିକାରରେ ଜଗତକୁ ମିଥ୍ୟା ବୋଲି ପ୍ରତିପନ୍ନ କରିଅଛନ୍ତି, ସେହି ସ୍ଥଳରେ ଦ୍ୱୈତବାଦି-ମାନେ କହନ୍ତି, ଯେତେବେଳେ କି ପ୍ରକୃତି ବିକାରୀ, ଅର୍ଥାତ୍ ପରିବର୍ତ୍ତନ-ଶୀଳ, ତେତେବେଳେ ସେହି ଅପରିବର୍ତ୍ତନୀୟ ନିତ୍ୟ ଶୁଦ୍ଧ ବୁଦ୍ଧ ବ୍ରହ୍ମ-ସହିତ ଜୀବର ସମାନ ସତ୍ତା ସମ୍ଭବପର ନୁହେ । ତାହା ଯଦି ସମ୍ଭବପର ନ ହେଲା, ତେବେ ଜୀବ ଓ ବ୍ରହ୍ମ ସ୍ୱତନ୍ତ୍ର କି ନୁହନ୍ତି କି ? ଅର୍ଥାତ୍ ଜୀବ ଓ ବ୍ରହ୍ମ ସ୍ୱତନ୍ତ୍ର ।

ମହାରାଜ ! ଅଦ୍ୱୈତବାଦିମାନେ ଯେଉଁଠାରେ ଜୀବ ଓ ବ୍ରହ୍ମର ଅଭିନ୍ନତ୍ୱ ଦେଖାଇଅଛନ୍ତି, ସେହିଠାରେ ଦ୍ୱୈତବାଦିମାନେ ମଧ୍ୟ ପାର୍ଥକ୍ୟ ଦେଖାଇଅଛନ୍ତି । ଦ୍ୱୈତବାଦରେ ଜୀବ ଓ ବ୍ରହ୍ମର ଯେ ପାର୍ଥକ୍ୟ, ସେହି ପାର୍ଥକ୍ୟୀଭୂତ ସାମଗ୍ରୀକୁ ବିଶିଷ୍ଟ ବୋଲି ବିଶିଷ୍ଟାଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟ ଉଲ୍ଲେଖ କରିଅଛନ୍ତି । ଦ୍ୱୈତମତରେ ଭକ୍ତି ବ୍ରହ୍ମଲାଭର ଏକମାତ୍ର ଉପାୟ । ସାଧକମାନେ ସ୍ତବ, ସ୍ମରଣ, ବନ୍ଦନ, ଅର୍ଚ୍ଚନ ଓ ନମସ୍କାରାଦିଦ୍ୱାରା ବ୍ରହ୍ମଙ୍କ କରୁଣା ଲାଭ କରନ୍ତି । ବ୍ରହ୍ମଙ୍କ କରୁଣା ଲାଭ ମାତ୍ରକେ ଜୀବର ଅଜ୍ଞାନା-ନ୍ଧକାର ବିଦୂରିତ ହୁଏ । ଅଜ୍ଞାନ ବିଦୂରିତ ହେଲେ ସାଧକ ପରମପୁରୁଷଙ୍କ ଅନୁଗ୍ରହ ଲାଭ କରେ । କରୁଣାମୟ ଓ ଭକ୍ତବତ୍ସଳ ବ୍ରହ୍ମ ଅବତାରରେ ଓ ପ୍ରତିମାଦିରେ ମଧ୍ୟ ଅଛନ୍ତି । ମହାରାଜ ! ଏହି ଦ୍ୱୈତମତରେ ଜୀବ ଓ ବ୍ରହ୍ମର ପୃଥକତ୍ୱ କେବଳ ସାରସିଦ୍ଧାନ୍ତ । ତହିଁ ପ୍ରମାଣ ଯଥା — "ନାପି ସାଧନାନୁଷ୍ଠାନେନ ନିରସ୍ତାବିଦ୍ୟସ୍ୟ ପରେଣ ସ୍ୱରୂପୈକସମ୍ଭବଃ ।" ଅର୍ଥାତ୍ ଜୀବର ସାଧନାଦିଦ୍ୱାରା ଅବିଦ୍ୟା ଦୂର ହେଲେ ମଧ୍ୟ ପରମେଶ୍ୱରଙ୍କର ସାରୂପ୍ୟ ଲାଭ ସମ୍ଭବପର ନୁହେ । ସେଠାରେ ଦୃଷ୍ଟାନ୍ତ ସୂତ୍ର, ଯଥା -- "ମୁକ୍ତ-ଜୀବଃ ପ୍ରଦୀପବଦାବେଶଃ", ଅର୍ଥାତ୍ ଯେପରି କି ପ୍ରଦୀପ ପ୍ରଭାଦ୍ୱାରା ଅନେକ ଦେଶ ପ୍ରକାଶ କରେ, ସେହିପରି ବ୍ରହ୍ମକର୍ତ୍ତୃକ ପ୍ରସୂତ ପ୍ରଜ୍ଞାଦ୍ୱାରା ମୁକ୍ତଜୀବ ସର୍ବବିଷୟକ ଜ୍ଞାନ ପ୍ରାପ୍ତ ହୋଇଥାଏ, ମାତ୍ର ସାରୂପ୍ୟ ଲାଭ ସମ୍ଭବ ନୁହେ ।

ଶ୍ରୁତି ଦୃଷ୍ଟାନ୍ତ, ଯଥା—"ଜଗଦ୍‌ବ୍ୟାପାରବର୍ଜଂ ପ୍ରକରଣାଦସନ୍ନିହିତତ୍ୱାଚ୍ଚ", ଜଗଦ୍‌ବ୍ୟାପାର ଅର୍ଥାତ୍ ସୃଷ୍ଟି ପ୍ରଭୃତି ସମସ୍ତ ବ୍ରହ୍ମର କାର୍ଯ୍ୟ । ଯାହାହେଉ, ଜଗଦ୍‌ବ୍ୟାପାରକୁ ଛାଡ଼ି ମାତ୍ର ମୁକ୍ତ ଜୀବଠାରେ ସମ୍ଭବପର ନୁହେ । ମୁକ୍ତଜୀବର ସୃଷ୍ଟି ବ୍ୟାପାରର ସହିତ ସମ୍ପର୍କ ନାହିଁ, କିନ୍ତୁ ଭଗବାନଙ୍କର ଅନୁଗ୍ରହ ହେଲେ ସେ ସମସ୍ତ ବସ୍ତୁର ଲାଭ କରି ପାରେ । ଅତଏବ ଶ୍ରୀମାନ୍ ଆଚାର୍ଯ୍ୟଙ୍କ ଉକ୍ତି, ଯଥା—

"ଅଦ୍ୱୈତାଖ୍ୟମତଂ ବଦାମ୍ୟ ଝଟିତି ଦ୍ୱୈତପ୍ରବୃତ୍ତୋଭବ ।
ସୋଽହଂ ଜ୍ଞାନମିଦଂ ତ୍ୟଜ ତ୍ୟଜ ହରେଃ ପାଦପଦ୍ମଂ ଭଜେଃ ॥"

ଅର୍ଥାତ୍ ଏଥିରୁ ବ୍ୟକ୍ତ ହେଉଛି ଯେ, ଅଦ୍ୱୈତ ମତ ପରିହାରପୂର୍ବକ ସତ୍ୱର ଦ୍ୱୈତମତରେ ପ୍ରବୃତ୍ତିପରାୟଣ ହୁଅ । ଆମ୍ଭେ ବ୍ରହ୍ମ, ଏହି ଭ୍ରମଜ୍ଞାନ ଦୂର କରି ଦାସାନୁଦାସଭାବରେ ଶ୍ରୀହରିଙ୍କ ପାଦପଦ୍ମ ଭଜନା କର । ଏହାବାଜ ! ଦ୍ୱୈତ ଓ ବିଶିଷ୍ଟାଦ୍ୱୈତମାନେ ଭକ୍ତି କେବଳ ଈଶ୍ୱରଲାଭର ସାଧନ ବୋଲି ସିଦ୍ଧାନ୍ତ କରିଅଛନ୍ତି । ଯଥା ଭାଗବତେ—

"ଶ୍ରେୟଃ ସ୍ରୁତିଂ ଭକ୍ତିମୁଦସ୍ୟତେ ବିଭୋ !
କ୍ଲିଶ୍ୟନ୍ତି ଯେ କେବଳ ବୋଧଲବ୍ଧୟେ ।
ତେଷାମସୌ କ୍ଲେଶଳ ଏବ ଶିଷ୍ୟତେ
ନାନ୍ୟଦ୍ ଯଥା ସ୍ଥୂଳତୁଷାବଘାତିନାଂ ॥"

ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଗୁଣବର୍ଣ୍ଣନ ପ୍ରସଙ୍ଗରେ ବ୍ରହ୍ମା ବୋଲିଅଛନ୍ତି—ଯେଉଁମାନେ ସୂକ୍ଷ୍ମ ପ୍ରମାଣ ଧାନ୍ୟରାଶି ପରିତ୍ୟାଗ କରି ସ୍ଥୂଳପ୍ରମାଣ ତୁଷରାଶି ତାଡ଼ନ କରନ୍ତି, ସେମାନଙ୍କର ଯେପରି କୌଣସି ଫଳ ନାହିଁ, ସେହିପରି ଯେଉଁମାନେ ତୁମ୍ଭର ମଙ୍ଗଳମୟ ଭକ୍ତି ପରିତ୍ୟାଗ କରି କେବଳ ଜ୍ଞାନଲାଭରେ ଯତ୍ନ କରିଥାନ୍ତି, ସେମାନଙ୍କର କ୍ଳେଶହିଁ ସାର । ଯଥା—

"ନୃଣାଂ ଜନ୍ମସହସ୍ରେଣ ଭକ୍ତୌ ପ୍ରୀତିର୍ହି ଜାୟତେ ।
କଲୌ ଭକ୍ତିଃ କଲୌ ଭକ୍ତିର୍ଭକ୍ତ୍ୟା କୃଷ୍ଣଃ ପୁରସ୍ଥିତଃ ॥"
"ଅଲଂ ବ୍ରତୈରଲଂ ତୀର୍ଥୈରଲଂ ଯୋଗୈରଲଂ ମଖୈଃ ।
ଅଲଂ ଜ୍ଞାନକଥାଲାପୈ ର୍ଭକ୍ତିରେକୈବ ମୁକ୍ତିଦା ॥"

ମହାରାଜ ! ଶ୍ରୀମନ୍ନାରାୟଣଙ୍କ ନାମ ସ୍ମରଣ ମାତ୍ରକେ ହୃଦୟ ମଧ୍ୟରେ ଯାହା କି ଅପୂର୍ବ ଭାବ ଜାତ ହୁଏ, ତାହାର ନାମ ଭକ୍ତି । ସେହି ଭକ୍ତିର ସହିତ ନାରାୟଣଙ୍କର ପୂଜା ଓ ଅର୍ଚ୍ଚନା କରି ମାନବ ସିଦ୍ଧିଲାଭରେ ସକ୍ଷମ ହୋଇଥାଏ । କେବଳ ଭକ୍ତି ପୂଜାର ଅଗ୍ରମୂର୍ତ୍ତି ଓ ସାରସର୍ବସ୍ୱ । ନବଧା ଭକ୍ତି, ଯଥା

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନଂ ॥"

ଅର୍ଥାତ୍ ଶ୍ରୀହରିଙ୍କ ନାମ ଶ୍ରବଣ କୀର୍ତ୍ତନ ଓ ସ୍ମରଣ ତାହାଙ୍କର ସେବା ଓ ପୂଜା ପ୍ରଣାମ ଓ ଦାସ୍ୟ ତାହାଙ୍କ ସହିତ ସଖ୍ୟ ଓ ତାହାଙ୍କଠାରେ ଆତ୍ମ-ସମର୍ପଣ ଏହି ନବଧାଭକ୍ତି ଉଲ୍ଲେଖ ହୋଇଅଛି । କେହି କେହି ତାମସ ଅଧମା ମଧ୍ୟମା ଓ ଉତ୍ତମା, ରାଜସ ଅଧମା ମଧ୍ୟମା ଉତ୍ତମା ଓ ସାତ୍ତ୍ୱିକ୍ୟ ଅଧମା ମଧ୍ୟମା ଓ ଉତ୍ତମା ଏହିରୂପ ନବଧା ଭକ୍ତି ଉଲ୍ଲେଖ କରିଅଛନ୍ତି । ଅନ୍ୟ ଲୋକର ବିନାଶ କାମନା କରି ଭକ୍ତିର ସହିତ ନାରାୟଣଙ୍କର ଯେଉଁ ପୂଜା କରାଯାଏ, ସେହି ଭକ୍ତିର ନାମ ତାମସ ଅଧମା । ସ୍ୱୈରିଣୀ ସ୍ତ୍ରୀମାନେ ଯେପରି କି କପଟ ପ୍ରଣୟ ପ୍ରକାଶ କରନ୍ତି, ସେହିପରି କପଟଶୀଳତାସହକାରେ ଭଣ୍ଡବ୍ୟକ୍ତିମାନେ ଭକ୍ତିର ସହିତ ଯେଉଁ ପୂଜା କରନ୍ତି, ତାହାର ନାମ ତାମସ ମଧ୍ୟମା । ଯେଉଁମାନେ ଅପରପର ପୂଜା ଅନୁକରଣ କରି ଭକ୍ତିର ସହିତ ପୂଜା କରନ୍ତି, ସେହି ଭକ୍ତିର ନାମ ତାମସ ଉତ୍ତମା । ଯେଉଁମାନେ ଧନ ପୁତ୍ର ଓ ଦାରା ପ୍ରଭୃତି କାମନା କରି

ଶ୍ରଦ୍ଧାସହକାରେ ବିଷ୍ଣୁଙ୍କୁ ଅର୍ଚ୍ଚନା କରନ୍ତି, ସେହି ଭକ୍ତିର ନାମ ରାଜସ ଅଧମା । ଯେଉଁମାନେ ସୁଖୈଶ୍ୱର୍ଯ୍ୟ କାମନା କରି ଶ୍ରଦ୍ଧାସହକାରେ ବିଷ୍ଣୁଙ୍କୁ ଅର୍ଚ୍ଚନା କରନ୍ତି, ସେହି ଭକ୍ତିକୁ ରାଜସ ମଧ୍ୟମା ବୋଲାଯାଏ । ଯେଉଁମାନେ ସାଲୋକ୍ୟାଦି ପରମପଦ କାମନା କରି ଶ୍ରୀମନ୍ନାରାୟଣଙ୍କୁ ଅର୍ଚ୍ଚନା କରନ୍ତି, ସେହି ଭକ୍ତିକୁ ରାଜସ ଉତ୍ତମା ବୋଲାଯାଏ । ସ୍ୱକୃତ ପାପର କ୍ଷୟକାମନା-ପୂର୍ବକ ଶ୍ରୀମନ୍ନାରାୟଣଙ୍କ ଯେଉଁ ଅର୍ଚ୍ଚନା କରାଯାଏ, ସେହି ଭକ୍ତିକୁ ସାତ୍ତ୍ୱିକ ଅଧମା ବୋଲାଯାଏ । ଶ୍ରୀମନ୍ନାରାୟଣଙ୍କର ଏହି ପ୍ରିୟ ଓ ଅଭିମତ ଏହିପରି ସ୍ଥିର କରି ଶ୍ରଦ୍ଧାସହକାରେ ଯେଉଁ ପୂଜା କରାଯାଏ, ସେହି ଭକ୍ତିକୁ ସାତ୍ତ୍ୱିକ ମଧ୍ୟମା ବୋଲାଯାଏ । ଶ୍ରୀମନ୍ନାରାୟଣଙ୍କର ମହିମା କୀର୍ତ୍ତନ ଓ ଶ୍ରବଣ କରି ତଦାକାରାକାରିତହୃଦୟରେ ଯାହା କି ଅପୂର୍ବ ଆନନ୍ଦ ଅନୁଭବ କରାଯାଏ, ସେହି ଆନନ୍ଦର ସହିତ ଯେଉଁ ସେବା ପୂଜା ଓ ଅର୍ଚ୍ଚନା କରାଯାଏ, ସେହି ଭକ୍ତିକୁ ସାତ୍ତ୍ୱିକ ଉତ୍ତମ ଭକ୍ତି ବୋଲାଯାଏ । ଏହି ଭକ୍ତି ସର୍ବାପେକ୍ଷା ଶ୍ରେଷ୍ଠ । ଭକ୍ତି ସମ୍ବନ୍ଧରେ ଉଦ୍ଧବଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଉକ୍ତି ଯଥା—

"ଯଥାଗ୍ନିନା ହେମମଳଂ ଜହାତି
ଧ୍ମାନ୍ତଂ ପୁନଃ ସ୍ୱଂ ଭଜତେ ଚ ରୂପଂ ।
ଆତ୍ମା ଚ କର୍ମାନୁଶୟଂ ବିଧୂନ୍ୱନ୍
ମଦ୍ଭକ୍ତିଯୋଗେନ ଭଜତ୍ୟଥୋ ମାଂ ।"

ଅର୍ଥାତ୍ ଯେପରି ସମୃଦ୍ଧ ଅଗ୍ନି ସୁବର୍ଣ୍ଣର ମଳଦୋଷ ଦଗ୍ଧ କରେ, ସେହିପରି ମଦ୍‌ବିଷୟା ଭକ୍ତି ଯାବତୀୟ ପାପ ଦଗ୍ଧ କରିଥାଏ । ଭକ୍ତି ବ୍ୟତିରେକେ ଆମ୍ଭଙ୍କୁ ପାଇବାର ଉପାୟାନ୍ତର ନାହିଁ । ଯେପରି କି ସାଧୁମାନଙ୍କ ଆତ୍ମା ଆମ୍ଭଙ୍କୁ ଶ୍ରଦ୍ଧାସମ୍ପନ୍ନ ଭକ୍ତିଦ୍ୱାରା ଲାଭ କରେ, ସେହିପରି ସତ୍ୟଦୟା-ସମନ୍ୱିତ ଧର୍ମ ଓ ତପୋଯୁକ୍ତ ବିଦ୍ୟା ପ୍ରଭୃତି ମଦୀୟ ଭକ୍ତିଶୂନ୍ୟ ଆତ୍ମାକୁ

ପଦ୍ଧାନ କରିବା ପକ୍ଷରେ ସମର୍ଥ ନୁହେ । ସାର କଥା ଏହି ଯେ, ଭକ୍ତି ବ୍ୟତିରେକେ ଚିତ୍ତର ଶୁଦ୍ଧି ନାହିଁ ।

ରାଜା— ମହାଭାଗ ! ଭକ୍ତମାନଙ୍କର ଭକ୍ତି ଲକ୍ଷିତ ହେବାର ଉପାୟ ଅଛି କି ?

ସାଧୁ—ମହାରାଜ ! ଭଗବାନଙ୍କ ମହିମା ଶ୍ରବଣ ଓ କୀର୍ତ୍ତନ ମାତ୍ରକେ ଯେଉଁମାନଙ୍କର ଲୋମାଞ୍ଚ, ମନର ଆର୍ଦ୍ରଭାବ, ବାକ୍ୟର ଗଦ୍ଗଦଭାବ ଓ ଅନନାଶ୍ରୁକଣା ପ୍ରଭୃତି ଲକ୍ଷିତ ହୁଏ, ସେହିମାନଙ୍କୁ ଭକ୍ତ ବୋଲି ପରିଚୟ କରାଯାଏ । ଆଉ ମଧ ଭକ୍ତମାନେ ନାମ ସ୍ମରଣ ମାତ୍ରକେ କେତେବେଳେ କେତେବେଳେ ହାସ୍ୟ, କେତେବେଳେ କେତେବେଳେ ରୋଦନ, କେତେବେଳେ କେତେବେଳେ ନୃତ୍ୟ ଓ କେତେବେଳେ କେତେବେଳେ ଗାନ କରିଥାନ୍ତି । ସେମାନଙ୍କର ଏତାଦୃଶ ଭକ୍ତି ତ୍ରିଲୋକପାବନୀ । ଭକ୍ତ ସମ୍ବନ୍ଧରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି । ଯଥା:—

"ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହଂ ॥"
"ମନ୍ମନା ଭବ କୌନ୍ତେୟ ମଦ୍ଭକ୍ତୋ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣଃ ॥"

ହେ ଅର୍ଜୁନ ! ଆମ୍ଭେ ସର୍ବଭୂତରେ ସମଭାବରେ ଅବସ୍ଥିତ କରିଅଛୁ, ଆମ୍ଭର କେହି ଦ୍ୱେଷ୍ୟ ବା ପ୍ରିୟ ନାହିଁ, ଯେଉଁମାନେ ଭକ୍ତିସହକାରେ ଆମ୍ଭର ଭଜନା କରନ୍ତି, ସେମାନେ ଆମ୍ଭଠାରେ ଓ ଆମ୍ଭେ ମଧ ସେମାନଙ୍କଠାରେ ଅବସ୍ଥାନ କରୁଁ । ହେ ଅର୍ଜୁନ ! ତୁମ୍ଭେ ଏକାନ୍ତ ମଦ୍ଭକ୍ତ, ମଦୁପାସକ ଓ ମଦେକସେବକ ହୋଇ ଆମ୍ଭଙ୍କୁ ନମସ୍କାର କର ।

"ଧର୍ମଂ ଭଜସ୍ୱ ସତତଂ ତ୍ୟଜ ଲୋକଧର୍ମାନ୍
ସେବସ୍ୱ ସାଧୁପୁରୁଷାନ୍ ଜହି କାମତୃଷ୍ଣାଂ ।
ଅନ୍ୟସ୍ୟ ଦୋଷଗୁଣଚିନ୍ତନମାଶୁ ମୁକ୍ତ୍ୱା ।
ସେବାକଥାରସମହୋ ନିତରାଂ ପିବ ତ୍ୱଂ ॥"

ରାଜା — ମହାଭାଗ ! ଆପଣ ଯାହା କି ଜ୍ଞାନବଳରେ ସୋଽହଂ ଭାବ ଓ ଭକ୍ତିବଳରେ ଦାସୋଽହଂ ଭାବର ଚିହ୍ନ ଦେଖାଇବା ହେଲେ, ସେଥି ମଧ୍ୟରୁ କେଉଁ ମତକୁ ସ୍ଥିର ବୋଲି ମନେ କରୁଅଛନ୍ତି ?

ସାଧୁ — ମହାରାଜ ! ଶଙ୍କର ଓ ରାମାନୁଜପ୍ରମୁଖ ଭାବୁକମାନଙ୍କ ହୃଦୟ ମଧ୍ୟରେ ଯାହାଙ୍କର ଯେଉଁ ଯେଉଁ ଭାବର ଚିହ୍ନ ପ୍ରତିଫଳିତ ହୋଇଥିଲା, ସେ ସେହି ସେହି ଭାବର ଚିହ୍ନ ଦେଖାଇ ଯାଇଅଛନ୍ତି, ମାତ୍ର କେଉଁ ମତକୁ ସ୍ଥିର, ତାହା ଅମ୍ଭେ ସମ୍ପୂର୍ଣ୍ଣ କହିବାକୁ ଅକ୍ଷମ । ତେବେ ଏତିକି ଜାଣ ଯେ, ଭାରତର ଅଧିକାଂଶ ଲୋକେ ଅଦ୍ୱୈତଧର୍ମାବଲମ୍ବୀ ।

ଇତି ବେଦାନ୍ତଦର୍ଶନନାମକ ଦ୍ୱିତୀୟ ପରିଚ୍ଛେଦ ସମାପ୍ତ ।

## ତୃତୀୟ ପରିଚ୍ଛେଦ ।

ଅଥ ସାଂଖ୍ୟଦର୍ଶନ ।

ରାଜା — ମହାଭାଗ ! ଆପଣ ବେଦାନ୍ତଦର୍ଶନ ବିଷୟ ଅଉ କହୁ ନ ବୋଲି ସାଂଖ୍ୟଦର୍ଶନର ସାର ସାର ବିଷୟ ଶୁଣାଇ କୃତାର୍ଥ କରିବା ହେବେ ।

ସାଧୁ  ମହାରାଜ ! ସାଂଖ୍ୟକାର ମତରେ ସଂସାର ଦୁଃଖମୟ । ଜ୍ଞାନରୂପ ପରମପୁରୁଷାର୍ଥଦ୍ୱାରା ଦୁଃଖନିବୃତ୍ତି କେବଳ ସାଂଖ୍ୟଦର୍ଶନର ମୁଖ୍ୟ ପ୍ରତିପାଦ୍ୟ । ଯାବତ ତତ୍ତ୍ୱଜ୍ଞାନ ନ ହେବା ପର୍ଯ୍ୟନ୍ତ ଦୁଃଖର ଅବସାନ କିମ୍ବା ମୁକ୍ତିର ସମ୍ଭାବନା ପର୍ଯ୍ୟନ୍ତ ନ ଥାଏ । ଅତଏବ ସୂତ୍ର, ଯଥା:— "ତ୍ରିବିଧଦୁଃଖାତ୍ୟନ୍ତନିବୃତ୍ତିରତ୍ୟନ୍ତ ପୁରୁଷାର୍ଥଃ ।" ଅର୍ଥାତ୍ ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତିର ନାମ ପରମପୁରୁଷାର୍ଥ । ସାଂଖ୍ୟ ମତରେ ସଂସାର ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଏହି ତିନି ପ୍ରକାର ଦୁଃଖରେ ଜଡ଼ିତ । ଆଧ୍ୟାତ୍ମିକ ଦୁଃଖ ଶାରୀରିକ ଓ ମାନସିକ ଭେଦରେ ଦୁଇ ପ୍ରକାର । ବାତ ପିତ୍ତ ଶ୍ଳେଷ୍ମାଦିଜନିତ ଯେ ଦୁଃଖ, ତାହାର ନାମ ଶାରୀରିକ ଦୁଃଖ । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟାଦିଜନିତ ଯେ ଦୁଃଖ, ତାହାର ନାମ ମାନସିକ ଦୁଃଖ । ମନୁଷ୍ୟ, ପଶୁ, ପକ୍ଷୀ, ସରୀସୃପ ଓ ବୃକ୍ଷାଦିଜନିତ ଯେ ଦୁଃଖ, ତାହାର ନାମ ଆଧିଭୌତିକ ଦୁଃଖ । ଭୂତ, ପ୍ରେତ, ବାତ, ବୃଷ୍ଟି, ବଜ୍ରପାତାଦି ଜନିତ ଯେ ଦୁଃଖ, ତାହାର ନାମ ଆଧିଦୈବିକ ଦୁଃଖ । ଏହି ଦୁଃଖତ୍ରୟର ଯାହା କି ଅତିଶୟ ନିବୃତ୍ତି, ତାହାର ନାମ ପରମପୁରୁଷାର୍ଥ । ଏତାଦୃଶ ପୁରୁଷାର୍ଥ ଲାଭରେ ଆତ୍ୟାନ୍ତିକ ମୁକ୍ତି ଓ ମୋକ୍ଷ ଲାଭ ହୁଏ । ଏତାଦୃଶ ପୁରୁଷାର୍ଥ କିରୂପେ ସାଧିତ ହୁଏ, ତାହାର ଆଲୋଚନା ସକାଶେ ସାଂଖ୍ୟଦର୍ଶନର ସୃଷ୍ଟି ହୋଇଅଛି ।

ରାଜା  ମହାଭାଗ ! ଧନ, ପୁତ୍ର, ଔଷଧ, ପଣ୍ଡିତ ଓ ମନ୍ତ୍ର ତନ୍ତ୍ରାଦି ସୁଗମ ଉପାୟଦ୍ୱାରା ଏହି ତ୍ରିବିଧ ଦୁଃଖର ନିବୃତ୍ତି ହୋଇ ପାରୁଥିବା ସ୍ଥଳରେ ଦର୍ଶନଶାସ୍ତ୍ର ଆଲୋଚନା କରିବା ନିରର୍ଥକ ନୁହେଁ କି ?

ସାଧୁ  ମହାରାଜ ! ସାଂଖ୍ୟ ମତରେ ଦୁଃଖର ଦୁଇ ଅବସ୍ଥା; ଏକ ଅବସ୍ଥା ସ୍ଥୂଳ ଓ ଅନ୍ୟ ଅବସ୍ଥା ସୂକ୍ଷ୍ମ । ମନୁଷ୍ୟ ପୂର୍ବୋକ୍ତ ସୁଗମ ଉପାୟଦ୍ୱାରା ସଂସାରର ସ୍ଥୂଳ ଦୁଃଖ ନିବାରଣ କରି ପାରିଲେ ପାରେ । ଅର୍ଥାତ୍ ପୁତ୍ର ଓ

ଧନାଦିଦ୍ୱାରା ମନୋଦୁଃଖର ନିବୃତ୍ତି । ଆହାରରେ କ୍ଷୁଧାର ନିବୃତ୍ତି । ଔଷଧ ସେବନରେ ରୋଗର ନିବୃତ୍ତି । ମଣିମନ୍ତ୍ରାଦିଦ୍ୱାରା ଭୂତ ପ୍ରେତାଦିର ନିବୃତ୍ତି ହୋଇଥାଏ; ମାତ୍ର ତାହା ଅତ୍ୟନ୍ତିକ ଦୁଃଖନିବୃତ୍ତି ନୁହେ । ଯେହେତୁ ଔଷଧାଦିଦ୍ୱାରା ବର୍ତ୍ତମାନ ରୋଗର ଶାନ୍ତି ହେଲେ ମଧ୍ୟ ଭବିଷ୍ୟତ୍ ସେହି ରୋଗର ପୁନରୁତ୍ପତ୍ତିର ସମ୍ଭାବନା ଥାଏ । ଅତଏବ ଲୌକିକ ସୁଗମ ଉପାୟଦ୍ୱାରା ଅତ୍ୟନ୍ତିକ ଦୁଃଖନିବୃତ୍ତି କଦାଚ ସମ୍ଭବପର ନୁହେ । ଆଉ ମଧ୍ୟ ବୈଦିକ ଯାଗଯଜ୍ଞାଦି ଉପାୟରେ ଦୁଃଖନାଶପୂର୍ବକ ସୁଖଧାମ ସ୍ୱର୍ଗଲାଭ ହୋଇ ପାରେ, ମାତ୍ର ତାହା ଚିରସ୍ଥାୟୀ ନୁହେ । ଯେହେତୁ ଯଜ୍ଞକର୍ତ୍ତାର ଜୀବ ହିଂସାଦିର ପରିଣାମ ଫଳ ସୁଖପ୍ରଦ ନୁହେ । ଅର୍ଥାତ୍ ମନୁଷ୍ୟ ଦେବଲୋକର ତୃପ୍ତିସାଧକ, ସ୍ୱର୍ଗାଦି ଫଳ ଭୋଗ କଲା ପରେ ଜୀବହିଂସାପ୍ରଯୁକ୍ତ ନରକଜନକ ପାପ ଭୋଗିଥାଏ । ସେଠାରେ ଶ୍ରୁତି ଦୃଷ୍ଟାନ୍ତ, ଯଥାଃ - "କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି" ଅର୍ଥାତ୍ ପୁଣ୍ୟ କ୍ଷୟ ହେଲେ ପୁନଶ୍ଚ ମର୍ତ୍ତ୍ୟକୁ ଆଗମନ କରିବାକୁ ହୋଇଥାଏ । ଅତଏବ ଲୌକିକ ସୁଗମ ଉପାୟରେ ସ୍ଥୂଳ ଦୁଃଖର ନିବୃତ୍ତି ହେଲେ ମଧ୍ୟ ସୂକ୍ଷ୍ମ ଦୁଃଖର ନିବୃତ୍ତି କଦାଚ ସମ୍ଭବପର ନୁହେ । ଫଳତେ ଯାହାର ପୁତ୍ରଶୋକ ହୋଇଅଛି, ସେ ଧନ ଚିନ୍ତାରେ ମନୋନିବେଶ କଲେ, ପୁତ୍ରଶୋକ ନିବୃତ୍ତିର ଚେଷ୍ଟା ପାଇ ପାରେ, କିନ୍ତୁ ଏକାବେଳକେ ପୁତ୍ରଶୋକନିବୃତ୍ତି ହୋଇ ପାରେ କି ? ଆଉ ମଧ୍ୟ ଯେଉଁ ଲୋକର କୌଣସି ଅଙ୍ଗପ୍ରତ୍ୟଙ୍ଗର ବ୍ୟବଚ୍ଛେଦ ଘଟିଥାଏ, ରୋଗନିବୃତ୍ତି ପରେ ତାହାର ସେହି ଅଙ୍ଗଜନିତ ଦୁଃଖର ନିବୃତ୍ତି ସମ୍ଭବପର କି ? ଏହି କେବଳ ସୂକ୍ଷ୍ମ ଦୁଃଖ । ବର୍ତ୍ତମାନ ଦୁଃଖର ସୁଗମ ଉପାୟରେ ନିବୃତ୍ତି ହେଲେ ହୋଇ ପାରେ, ମାତ୍ର ଅନାଗତ ଓ ଭବିଷ୍ୟତ୍ ଦୁଃଖନିବୃତ୍ତିର ଉପାୟ ଅଛି କି ? ସେହି ଅନାଗତ ଓ ଭବିଷ୍ୟତ୍ ଦୁଃଖର ନାମ ସୂକ୍ଷ୍ମ ଦୁଃଖ । ମହାରାଜ ! କେବଳ ପୁରୁଷାର୍ଥ ପ୍ରଭାବରେ ଏହି ସର୍ବବିଧ ଦୁଃଖର ନିବୃତ୍ତି

ହୋଇଥାଏ । ସାଂଖ୍ୟମତରେ ଅତ୍ୟନ୍ତିକ ତ୍ରିବିଧ ଦୁଃଖ ନିବୃତ୍ତିର ଉପାୟ କେବଳ ଜ୍ଞାନ; ସେହି ଜ୍ଞାନଲାଭର ନାମ ପୁରୁଷାର୍ଥ । ଜ୍ଞାନରୁ ମୁକ୍ତି । ଯେତେବେଳ ପର୍ଯ୍ୟନ୍ତ ପ୍ରକୃତି ଓ ପୁରୁଷର ବିବେକଜ୍ଞାନ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ଜୀବର ମୁକ୍ତିର ସମ୍ଭାବନା ପର୍ଯ୍ୟନ୍ତ ନ ଥାଏ ।

ମହାରାଜ ! ସାଂଖ୍ୟକାର ପୁରୁଷ ଓ ପ୍ରକୃତିର ବିଷୟ ଏହିପରି ବ୍ୟକ୍ତ କରିଅଛନ୍ତି । ଯଥାଃ—ଆମ୍ଭେ ବୋଇଲେ ପ୍ରଧାନତଃ ଆମ୍ଭେ କଣ ବୁଝିଥାଉଁ, ଆମ୍ଭର ଅଙ୍ଗ ପ୍ରତ୍ୟଙ୍ଗ, ବାକ୍ୟ, ମନ ଓ ଦେହ ଅଥବା ଏଥିରୁ ଅତିରିକ୍ତ ଅନ୍ୟ କିଛି ବୁଝିଥାଉଁ । ଅତଏବ ଯାହାକୁ କି ଆମ୍ଭେ ବୋଲି ସ୍ୱୀକାର କରୁଁ, ଆମ୍ଭ ଦେହରେ ଅଘାତ ଲାଗିଲେ ଆମ୍ଭେ ବୋଲୁଁ ଆଘାତ ଲାଗିଅଛି, କାହାର ନିକଟରେ ଅପମାନିତ ବା ଲାଞ୍ଛିତ ହେଲେ ଆମ୍ଭେ କଷ୍ଟ ପାଇଥାଉଁ, ସୁତରାଂ ବିବେଚନା କରି ବୁଝିଲେ ବୁଝାଯାଏ ଯେ, ଆମ୍ଭ ଶରୀର ଓ ମନ ପ୍ରଭୃତିରୁ ଆମ୍ଭେ ସ୍ୱତନ୍ତ୍ର । ଅତଏବ ସୁଖଦୁଃଖାଦିର ଭୋଗକର୍ତ୍ତା ଇନ୍ଦ୍ରିୟର ଅଗୋଚରୀଭୂତ ଯେ ଆମ୍ଭେ, ସାଂଖ୍ୟକାର ମତରେ ଏହାର ନାମ ପୁରୁଷ । ମହାତ୍ମାଙ୍କର ଏହାର ନାମ ଆତ୍ମା । ଏହି ପୁରୁଷ ଭିନ୍ନ ଅନ୍ୟ ଯାହା କିଛି ତାହାର ନାମ ପ୍ରକୃତି । ସତ୍ତ୍ୱ, ରଜ ଓ ତମର ଯେ ସାମ୍ୟାବସ୍ଥା ତାହାର ନାମ ମୂଳ ପ୍ରକୃତି । ସାଂଖ୍ୟକାରିକା, ଯଥାଃ "ମୂଳ ପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ । ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନବିକୃତିଃ ପୁରୁଷଃ ।" ଅର୍ଥାତ୍ ପ୍ରକୃତିରୁ ବିପରୀତ ସତ୍ତ୍ୱ ରଜ ତମର ବୈଷମ୍ୟ ଭାବର ନାମ ବିକୃତି । ଯେ ବିକୃତି ସୁଖକର, ତାହା ସତ୍ତ୍ୱପ୍ରଧାନ । ଯେ ବିକୃତି ଦୁଃଖକର, ତାହା ରଜଃପ୍ରଧାନ । ଯେ ବିକୃତି ମୋହକର ତାହା ତମଃପ୍ରଧାନ । ଯେପରି କି ଦୁଗ୍ଧ ଦଧିର ମୂଳ, ଅର୍ଥାତ୍ ଦୁଗ୍ଧରୁ ଦଧି, ଦଧିରୁ ନବନୀତ ଓ ନବନୀତରୁ ଘୃତ ଉତ୍ପନ୍ନ ହୁଏ, ସେହିପରି ପ୍ରକୃତି ସର୍ବକାର୍ଯ୍ୟର ମୂଳ । ପ୍ରକୃତିର ଏହି ପରିବର୍ତ୍ତନର ନାମ ବିକୃତି । ଏହି ମତରେ ଅଷ୍ଟ ପ୍ରକୃତି ଓ ଷୋଡ଼ଶ ବିକାରର

ପରିଚୟ ମିଳିଥାଏ । ସେହି ଅଷ୍ଟ ପ୍ରକୃତି ଅବ୍ୟକ୍ତ ମୂଳ ପ୍ରକୃତି (ଅନ୍ତଃକରଣ ବା ମହତ୍ତତ୍ତ୍ୱ) ବୁଦ୍ଧି, ଅହଂକାର, ପଞ୍ଚତନ୍ମାତ୍ର (ରୂପ ରସ ଶବ୍ଦ ଗନ୍ଧ ଓ ସ୍ପର୍ଶ) ଏହି ଷୋଡ଼ଶ ବିକାର ପଞ୍ଚ ଜ୍ଞାନେନ୍ଦ୍ରିୟ (ଚକ୍ଷୁ କର୍ଣ୍ଣ ନାସିକା ଜିହ୍ୱା ଓ ତ୍ୱକ୍) ପଞ୍ଚ କର୍ମେନ୍ଦ୍ରିୟ (ବାକ୍ ପାଣି ପାଦ ପାୟୁ ଓ ଉପସ୍ଥ) ଏବଂ ମନ ଏହି ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତର ସମ୍ମିଶ୍ରଣ ପଞ୍ଚ ମହାଭୂତ (କ୍ଷିତି ଅପ ତେଜ ମରୁତ୍ ଓ ବ୍ୟୋମ) ଅଷ୍ଟ ପ୍ରକୃତି ଷୋଡ଼ଶ ବିକାର ଓ ପୁରୁଷ, ଏହାର ନାମ ପଞ୍ଚବିଂଶତି ତତ୍ତ୍ୱ ।

ରାଜା— ମହାଭାଗ ! ଏହି ଶାସ୍ତ୍ରକୁ ସାଂଖ୍ୟ ବୋଲି ଯିବାର କୌଣସି କାରଣ ଅଛି କି ?

ସାଧୁ— ମହାରାଜ ! ଏହି ପୂର୍ବୋକ୍ତ ପଞ୍ଚବିଂଶତି ସଂଖ୍ୟା ଅନୁସାରେ ଶାସ୍ତ୍ର ରଚିତ ହୋଇଥିବାରୁ କପିଳ ମହର୍ଷି ଏହାର ନାମ ସାଂଖ୍ୟ ଦେଇଅଛନ୍ତି ।

ମହାରାଜ ! ଏହି ମତରେ ପୁରୁଷ ବା ଆତ୍ମା ପ୍ରକୃତି ବା ବିକୃତିରୁ ଅଲଗ । ପୁରୁଷ ଓ ପ୍ରକୃତି ଉଭୟ ନିତ୍ୟ ଅବ୍ୟୟ ଓ ଅନାଦି । ପ୍ରକୃତିଠାରୁ ପୁରୁଷ ପର୍ଯ୍ୟନ୍ତ ଉଲ୍ଲିଖିତ ପଞ୍ଚବିଂଶ ପଦାର୍ଥର ଜ୍ଞାନଲାଭହିଁ ତତ୍ତ୍ୱଜ୍ଞାନଲାଭ । ସାଂଖ୍ୟକାର ପୁରୁଷକୁ ନିତ୍ୟସତ୍ତ୍ୱାଦିଗୁଣଶୂନ୍ୟ ଓ କୂଟସ୍ଥ ଚୈତନ୍ୟ ବୋଲି ସ୍ୱୀକାର କରନ୍ତି । ପୁରୁଷ ନିର୍ଲିପ୍ତ ଅର୍ଥାତ୍ ପ୍ରକୃତିର ସହିତ ତାହାର କୌଣସି ସମ୍ବନ୍ଧ ନାହିଁ । ପ୍ରକୃତିର ସଂଯୋଗରେ ପୁରୁଷର ଦୁଃଖର ଉତ୍ପତ୍ତି । ପ୍ରକୃତିର ସହିତ ଯାହାକ ବିଚ୍ଛିନ୍ନତା ଭାବ ଘଟେ, ସେହି ବିଚ୍ଛିନ୍ନତା ପୁରୁଷର ଦୁଃଖନିବୃତ୍ତି ବା ମୁକ୍ତି । ପ୍ରକୃତିଠାରୁ ପୁରୁଷ ସ୍ୱତନ୍ତ୍ର ଅର୍ଥାତ୍ ପୁରୁଷ ସୁଖଦୁଃଖ ଓ କର୍ମକର୍ତ୍ତୃତ୍ୱର ଅତୀତ । ପ୍ରକୃତି ସର୍ବ ବିକୃତିର ଓ ସମସ୍ତ ସୁଖଦୁଃଖର ମୂଳୀଭୂତ । କେବଳ ନୈକଟ୍ୟ ସମ୍ବନ୍ଧବଶତଃ ପ୍ରକୃତିର ସୁଖଦୁଃଖାଦି ପୁରୁଷରେ ଅଧିଗତ ହୋଇଥାଏ । ଯେପରି ସ୍ଫଟିକ ସନ୍ନିଧାନରେ ଜବାକୁସୁମ ରଖି ଦେଲେ ପୁଷ୍ପର ବର୍ଣ୍ଣ ସ୍ଫଟିକରେ

ସମାବେଶ ହୁଏ, ସେହିପରି ପ୍ରକୃତିର ସନ୍ନିହିତ ପୁରୁଷରେ ସୁଖଦୁଃଖାଦି ବୃତ୍ତିର ଆରୋପ ହୁଏ । ଆଉ ମଧ୍ୟ ଯେପରି ସ୍ୱଚ୍ଛ ଦର୍ପଣରେ କାଳିମା ପ୍ରତିବିମ୍ବିତ ହୋଇ ଦର୍ପଣର ସ୍ୱଚ୍ଛତା ମଳିନ କରି ଦିଏ, ତଥାପି ମଧ୍ୟରେ ବ୍ୟବଧାନ ଥିଲେ ମଧ୍ୟ କାଚ ପାତ୍ରରେ ନିପତିତ ଛାୟାର ନ୍ୟାୟ ପ୍ରକୃତି ସମ୍ପୃକ୍ତ ପୁରୁଷର ସ୍ୱଚ୍ଛତା ଢାଙ୍କି ରଖେ । ପ୍ରକୃତିର ସେହି ଛାୟା ଦୂର କରି ପାରିଲେ ପୁରୁଷ ଆତ୍ମତତ୍ତ୍ୱ ବୁଝି ପାରେ । ସେହି ବୁଝିବା ଅବସ୍ଥାର ନାମ ପୁରୁଷାର୍ଥଲାଭ ବା ଦୁଃଖନିବୃତ୍ତି । ମହାରାଜ ! "କଟୁକୌଷଧୋପଶମସାଧ୍ୟସ୍ୟ ରୋଗସ୍ୟ ଶୀତଶର୍କରୋପଶମନୀୟତ୍ୱେନ୍ୟ ବା ରୋଗଣଃ ଶୀତଶର୍କରାପ୍ରବୃତ୍ତିଃ ସାଧୀୟସୀ ନ ସ୍ୟାତ୍ ।"

"ଅର୍କେଚେନ୍ମଧୁବିନ୍ଦେତ କିମର୍ଥଂ ପର୍ବତଂ ବ୍ରଜେତ୍ ।
ଇଷ୍ଟସ୍ୟାର୍ଥସ୍ୟ ସଂସିଦ୍ଧୌ କୋ ବିଦ୍ୱାନ୍ ଯତ୍ନମାଚରେତ୍ ।"

ଅର୍ଥାତ୍ ଯେଉଁ ରୋଗ କି କଟୁ ଔଷଧ ସେବନ କଲେ ଭଲ ହେବାର କଥା, ସେହି ରୋଗ ଯଦି ଶାକର ପ୍ରଭୃତି ସୁମିଷ୍ଟ ସୁଗମ ଉପାୟରେ ଭଲ ହୋଇଯାଏ, ତାହାହେଲେ କଟୁ ଔଷଧ ସେବନ କରିବା ନିଷ୍ପ୍ରୟୋଜନ । ଆଉ ମଧ୍ୟ ଯାହାର କି ଗୃହ କୋଣରୁ ମଧୁ ପ୍ରାପ୍ତ ହେବ, ସେ ମଧୁ ସକାଶେ ପର୍ବତକୁ ଯିବା ନିଷ୍ପ୍ରୟୋଜନ । ଅତଏବ ବିନା ଯତ୍ନରେ କାର୍ଯ୍ୟସିଦ୍ଧି ହେଉଥିବା ସ୍ଥଳରେ ଯତ୍ନ ଅବଲମ୍ବନ କରିବା ଅନୁଚିତ । ଆଉ ମଧ୍ୟ ଯଦି ସୁଗମ ଉପାୟରେ ଦୁଃଖ ନିବୃତ୍ତି ହୋଇ ପାରେ, ତାହାହେଲେ ପ୍ରକୃତି ଓ ପୁରୁଷର ବିବେକଜ୍ଞାନ ପର୍ଯ୍ୟନ୍ତ ପ୍ରୟାସୀ ହେବା ନିଷ୍ପ୍ରୟୋଜନ ଭାବି ଦର୍ଶନକାର ନିଜ ସୂତ୍ରଦ୍ୱାରା ସେହି ସୁଗମ ଉପାୟର ଚେଷ୍ଟା ଖଣ୍ଡନ କରିଅଛନ୍ତି । ଯଥା—"ନ ଦୃଷ୍ଟାତ୍ ତତ୍ ସିଦ୍ଧିର୍ନିବୃତ୍ତେଽପ୍ୟନୁବୃତ୍ତିଦର୍ଶନାତ୍ ।" ଅର୍ଥାତ୍ କେବଳ ଯେ ଦୁଃଖନିବୃତ୍ତିର ନାମ ପୁରୁଷାର୍ଥ, ତାହା ନୁହେ । କିନ୍ତୁ ଦୁଃଖୋତ୍ପତ୍ତି ନିବୃତ୍ତି କେବଳ ପୁରୁଷାର୍ଥ । ସୁତରାଂ

ଦୁଃଖୋତ୍ପତ୍ତିର ନିବୃତ୍ତି କରି ପାରିଲେ ମୁକ୍ତିଲାଭ ହୋଇଥାଏ । ମହାରାଜ ! ଯାହା କି ସୁଗମ ଔଷଧ ସେବନ ଓ ପଥ୍ୟାପଥ୍ୟାଦିଦ୍ୱାରା ଶାରୀରିକ ଦୁଃଖର ନିବୃତ୍ତି, ସୁନ୍ଦରୀ ସ୍ତ୍ରୀ ଓ ଧନୈଶ୍ୱର୍ଯ୍ୟାଦିଦ୍ୱାରା ମାନସିକ ଦୁଃଖର ନିବୃତ୍ତି ଏବଂ କ୍ରିୟାକଲାପ ଓ ଶାନ୍ତିସ୍ୱସ୍ତ୍ୟୟନାଦିଦ୍ୱାରା ଆଧିଭୌତିକ ଓ ଆଧିଦୈବିକ ଦୁଃଖର ଯାହା କି ନିବୃତ୍ତି, ତାହା ଦୁଃଖୋତ୍ପତ୍ତିନିବୃତ୍ତିର କାରଣ ନୁହେ, ଅ. ଏବ ଦୁଃଖୋତ୍ପତ୍ତିନିବୃତ୍ତିର ନାମ ପୁରୁଷାର୍ଥ ବୋଲି ଏହି ଦର୍ଶନକାର ସାରସିଦ୍ଧାନ୍ତ କରିଅଛନ୍ତି । ଏଣୁ ଦୁଃଖୋତ୍ପତ୍ତିନିବୃତ୍ତିର ଉପାୟ ଜ୍ଞାନ ଅର୍ଥାତ୍ ଜ୍ଞାନ ଲାଭରେ ମୁକ୍ତି ଲାଭ ହୁଏ । ମହାରାଜ ! ଏହି ଦର୍ଶନକାର କପିଳ ପ୍ରଭୃତି ଯାବତୀୟ ପଦାର୍ଥ ପଞ୍ଚବିଂଶତିଭାଗରେ ବିଭକ୍ତ କରି ଆଦି ପଦାର୍ଥ ପ୍ରକୃତି ନିତ୍ୟ ଓ ଅନ୍ତ୍ୟ ପଦାର୍ଥ ପୁରୁଷ ନିତ୍ୟ ବୋଲି ସ୍ଥିର କରିଅଛନ୍ତି । ଆଉ ମଧ୍ୟ ପ୍ରକୃତି ଓ ପୁରୁଷର ମଧ୍ୟବର୍ତ୍ତୀ ଅନ୍ୟାନ୍ୟ ପଦାର୍ଥ ଅନିତ୍ୟ ବୋଲି ସ୍ଥିର କରି-ଅଛନ୍ତି । ଯଥା ସୂତ୍ର—"ପ୍ରକୃତିପୁରୁଷୟୋରନ୍ୟତ୍ ସର୍ବମନିତ୍ୟଂ ।" ପ୍ରକୃତିର ପରିଣାମରେ ଯାବତୀୟ ଅନିତ୍ୟ ପଦାର୍ଥର ଉତ୍ପତ୍ତି । ଅର୍ଥାତ୍ ସତ୍ତ୍ୱ, ରଜ ଓ ତମଭାବର ପରିଣାମରେ ମହତ୍ତତ୍ତ୍ୱ, ମହତ୍ତତ୍ତ୍ୱରୁ ଅହଂଜ୍ଞାନ ବା ଅହଂକାରତତ୍ତ୍ୱ, ଅହଂକାରତତ୍ତ୍ୱର ଫଳରେ ପଞ୍ଚତନ୍ମାତ୍ର । ଏହି କ୍ରମରେ ପ୍ରକୃତିର ବିକାରରେ ସ୍ଥୂଳ ଓ ସୂକ୍ଷ୍ମ ଜଗତର ସୃଷ୍ଟି ହୋଇ-ଅଛି । ସୃଷ୍ଟିକାଳରେ ପ୍ରକୃତିର ଗୁଣ ପୁରୁଷରେ ଓ ପୁରୁଷର ଗୁଣ ପ୍ରକୃତିରେ ନ୍ୟସ୍ତ ହୋଇଥାଏ । ତେତେବେଳେ ପ୍ରକୃତି ଅଚେତନା ହେଲେ ମଧ୍ୟ ଚେତନାର ନ୍ୟାୟ ପ୍ରତୀୟମାନ ହୁଏ । ଆଉ ମଧ୍ୟ ପୁରୁଷର କର୍ତ୍ତୃତ୍ୱ ନ ଥିଲେ ସୁଦ୍ଧା ତେତେବେଳେ ସେ କର୍ତ୍ତାର ନ୍ୟାୟ ପ୍ରତୀୟମାନ ହୋଇ-ଥାଏ ।

ମହାରାଜ ! ଦର୍ଶନକାର ବୋଲିଅଛନ୍ତି, ଦର୍ପଣର ସ୍ୱାଭାବିକ ତେଜ ନ ଥାଇ ସୁଦ୍ଧା ଯେପରି କି ସୂର୍ଯ୍ୟର ପ୍ରତିବିମ୍ବରେ ଦର୍ପଣର ତେଜ ପ୍ରକାଶ ହୁଏ,

ଯାହା ମଧ୍ୟ ବାସ୍ତବିକ ସୂର୍ଯ୍ୟର ମଳିନତା ବା ଚଞ୍ଚଳତା ନ ଥାଏ, କିନ୍ତୁ ଦର୍ପଣର ମଳିନତା ବା ଚଞ୍ଚଳତାରେ ସୂର୍ଯ୍ୟର ପ୍ରତିବିମ୍ବ ଯେପରି ମଳିନ ବା ଚଞ୍ଚଳ ହୋଇଥାଏ, ସେହିପରି ଚେତନ ପୁରୁଷ ସନ୍ନିଧାନରେ ପ୍ରକୃତି ଚୈତନ୍ୟ-ଯୁକ୍ତା ଓ ପ୍ରକୃତିପ୍ରତିବିମ୍ବିତ ପୁରୁଷ କର୍ତ୍ତୃତ୍ୱ ଶୂନ୍ୟ ହୋଇ ସୁଦ୍ଧା କର୍ତ୍ତୃତ୍ୱଯୁକ୍ତ ହୋଇଥାଏ । ସାଂଖ୍ୟକାରିକା, ଯଥା—

"ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ ।
ପଙ୍ଗ୍ୱନ୍ଧବଦୁଭୟୋରପି ସଂଯୋଗସ୍ତତ୍କୃତଃ ସର୍ଗଃ ।"

ଅର୍ଥାତ୍ ଅନ୍ଧ ଓ ପଙ୍ଗୁ ଉଭୟ ସ୍ୱତନ୍ତ୍ରଭାବରେ କୌଣସି କାର୍ଯ୍ୟ କରିବା ପକ୍ଷରେ ସକ୍ଷମ ନୁହନ୍ତି, ମାତ୍ର ଉଭୟ ଏକତ୍ର ମିଳିତ ହୋଇ ଅନେକ କାର୍ଯ୍ୟ ସମ୍ପନ୍ନ କରିଥାନ୍ତି । ଫଳରେ ଯେପରି କି ଅନ୍ଧ ପଙ୍ଗୁକୁ କାନ୍ଧରେ ନେଇ ଦର୍ଶନଶକ୍ତିସମ୍ପନ୍ନ ହୋଇଥାଏ, ସୁତରାଂ ଦୃଷ୍ଟିଶକ୍ତିସମ୍ପନ୍ନ ପଙ୍ଗୁ ଓ ଚଳଶକ୍ତି-ସମ୍ପନ୍ନ ଅନ୍ଧ ଉଭୟ ଏକତ୍ର ମିଳି ଗୋଟିଏ ଅବିକଳେନ୍ଦ୍ରିୟ ମନୁଷ୍ୟର କାର୍ଯ୍ୟ କରିବାକୁ ସକ୍ଷମ ହୋଇଥାନ୍ତି, ସେହିପରି କ୍ରିୟାଶକ୍ତିହୀନ ଚେତନ ପୁରୁଷ ଓ କ୍ରିୟାଶୀଳା ଅଚେତନା ପ୍ରକୃତି ଉଭୟ ମିଳିତ ହୋଇ ଏକ କ୍ରିୟାଶୀଳ ଚେତନ ବ୍ୟକ୍ତିର ନ୍ୟାୟ ସୃଷ୍ଟି କାର୍ଯ୍ୟ କରିଥାନ୍ତି । ଅର୍ଥାତ୍ ଉଭୟ ମିଳନର ନାମ ସୃଷ୍ଟିକାର୍ଯ୍ୟ । ସୃଷ୍ଟି କେବଳ ଭୋଗ, ଭୋଗର ପର ବିଚ୍ଛେଦ ବା ମୁକ୍ତି । ମହାରାଜ ! ସେହି ମୁକ୍ତି ବା କୈବଲ୍ୟ ଲାଭରେ ପୁରୁଷର ଦୁଃଖନାଶ ହୋଇଥାଏ । ସାଂଖ୍ୟସୂତ୍ରର ଗୌଡ଼ପାଦ ଭାଷ୍ୟକାର କହି-ଅଛନ୍ତି—କାର୍ଯ୍ୟ ସିଦ୍ଧ ହେଲେ ଯେପରି କି ଅନ୍ଧ ଓ ପଙ୍ଗୁ ସ୍ୱୟଂ ଆପେ ଆପେ ବିଚ୍ଛିନ୍ନ ହୋଇ ପଡ଼ନ୍ତି, ସେହିପରି ଭୋଗ ବା ସୃଷ୍ଟିର ପର ପୁରୁଷ ଓ ପ୍ରକୃତି ବିଚ୍ଛିନ୍ନ ହୋଇଥାଏ । ପ୍ରକୃତି ଓ ପୁରୁଷର ସେହି ବିଚ୍ଛିତ୍ତିର ନାମ ମୋକ୍ଷ ବା କୈବଲ୍ୟ । ଜ୍ଞାନର ଉଦୟ ହେଲେ ପ୍ରକୃତି ଓ ପୁରୁଷର ସେହି ବିଚ୍ଛିତ୍ତିଭାବ ଘଟିଥାଏ ।

ଅତଏବ ସାଂଖ୍ୟମତରେ ପଞ୍ଚବିଂଶତି ତତ୍ତ୍ୱର ଭେଦଜ୍ଞାନକହି ଦୁଃଖନିବୃତ୍ତି ବା ମୋକ୍ଷଲାଭର ଉପାୟ । ସୁତରାଂ ପ୍ରକୃତି ଓ ପୁରୁଷର ସଂଯୋଗ କେବଳ ସୃଷ୍ଟିର ମୂଳ । ସୃଷ୍ଟପଦାର୍ଥମାନ କେବଳ ପ୍ରକୃତିଠାରୁ ଉତ୍ପନ୍ନ ହୋଇଅଛି । ମହାରାଜ ! ସାଂଖ୍ୟକାର ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରି ନାହାନ୍ତି । ସେମାନେ ବୋଲନ୍ତି, ବସ୍ତୁ ମାତ୍ର ସତ୍ ଅର୍ଥାତ୍ ଚିରଦିନ ବିଦ୍ୟମାନ ଥାଏ । ଆବିର୍ଭାବ ଓ ତିରୋଭାବରେ ବସ୍ତୁର ସତ୍ତା ପ୍ରମାଣିତ ହୁଏ । ଯେପରି ଘଟପଟାଦିର ମୂଳ ମୃତ୍ତିକା ଓ ସୂତ୍ର, ସେହିପରି ସୃଷ୍ଟିର ମୂଳ ପ୍ରକୃତି । ଯେପରି କି ଫଳ ଦେଖିବା ମାତ୍ରକେ ବୃକ୍ଷର କଥା ମନେ ପଡ଼େ, ସେହିପରି ପ୍ରତ୍ୟେକ ପଦାର୍ଥର ମୂଳକାରଣ ଅନୁସନ୍ଧାନ କରୁ କରୁ ଯେତେବେଳେ କୌଣସି ମୂଳକାରଣ ଅନୁସନ୍ଧାନରେ ଦେଖାଯାଏ ନାହିଁ, ସେତେବେଳେ ପ୍ରକୃତି ମୂଳପ୍ରକୃତି ବୋଲି ସ୍ଥିର ହୋଇଥାଏ । ଯେପରି କି ଡିମ୍ବରୁ ଉତ୍ପନ୍ନ ହେବା ପୂର୍ବେ ଅଣ୍ଡଜର ପରିଚୟ ଜଣାଯାଏ ନାହିଁ, ଅର୍ଥାତ୍ ଉତ୍ପତ୍ତି ପୂର୍ବରେ ଅଣ୍ଡ ମଧ୍ୟରେ ଯେପରି କି ଅଣ୍ଡଜ ଅବ୍ୟକ୍ତ ଅବସ୍ଥାରେ ଥାଏ, ପ୍ରକୃତି ମଧ୍ୟରେ ସୃଷ୍ଟପଦାର୍ଥମାନ ସେହି ଭାବରେ ଅବସ୍ଥିତ ଥାଏ । ମହାରାଜ ! ସାଂଖ୍ୟକାର ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦିହାନ ହୋଇ କେବଳ ପ୍ରକୃତିଠାରୁ ସୃଷ୍ଟି ଉତ୍ପନ୍ନ ହୋଇଥିବାର ସ୍ୱୀକାର କରନ୍ତି । ଯଥା ସୂତ୍ର - "ଈଶ୍ୱରାସିଦ୍ଧେଃ" ଅର୍ଥାତ୍ ଈଶ୍ୱର ଅସିଦ୍ଧ । ସେ ବିଷୟରେ ଯୁକ୍ତି ଯଥା—ପରମେଶ୍ୱର ଯଦି ସୃଷ୍ଟିର କର୍ତ୍ତା ବୋଲି ସ୍ୱୀକାର କରିବା, ତେବେ ତାଙ୍କୁ ବଦ୍ଧ କିମ୍ବା ମୁକ୍ତ ବୋଲି ସ୍ୱୀକାର କରିବା । ଯଦି ବଦ୍ଧ ବୋଲି, ତେବେ ତାଙ୍କର ଅସୀମ ଶକ୍ତିର କଳ୍ପନା କରି ଯାଇ ନ ପାରେ । ଯଦି ମୁକ୍ତ ବୋଲି, ତେବେ ରାଗାଦି ପ୍ରବୃତ୍ତିର ଅଭାବପ୍ରଯୁକ୍ତ ତାଙ୍କର କ୍ରିୟାହୀନତା ଘଟିଥାଏ । ଯେ କି କ୍ରିୟାହୀନ, ସେ ସୃଷ୍ଟିକର୍ତ୍ତା ହୋଇ ନ ପାରେ । ଯେହେତୁ ସୃଷ୍ଟିକାର୍ଯ୍ୟ ଇଚ୍ଛା ବ୍ୟତିରେକେ ହୋଇ ନ ପାରେ । ଅତଏବ ଈଶ୍ୱରଙ୍କଠାରେ ମୁକ୍ତିତ୍ୱର ଅସଦ୍ଭାବ ପ୍ରତିପନ୍ନ

ହେଲା । ଯଦି କ ରାଗାଦି କଳ୍ପନା ତାଙ୍କଠାରେ କରାଯିବ, ତେବେ ସେ ମନୁଷ୍ୟର ନ୍ୟାୟ ବିଷୟୀ ହୋଇଥାନ୍ତେ । ଯଦି ତାଙ୍କର ପର ସତ୍ତା ଅଛି ବୋଲି ତାଙ୍କୁ ଈଶ୍ୱର ବୋଲାଯାଏ, ତେବେ ଈଶ୍ୱରଙ୍କ ସତ୍ତା ସର୍ବତ୍ର ବିଦ୍ୟମାନ ଥିବା ସ୍ଥଳରେ ସମସ୍ତ ପଦାର୍ଥ ଈଶ୍ୱର ହେବାରେ ଆପତ୍ତି କଣ ? ସୁତରାଂ ପ୍ରମାଣର ଅଭାବରୁ ଈଶ୍ୱର ସିଦ୍ଧ ହେଲେ ନାହିଁ । ଯଥା ସୂତ୍ର— "ପ୍ରମାଣାଭାବାନ୍ନ ତତ୍ ସିଦ୍ଧି ।" ମହାରାଜ ! ସାଂଖ୍ୟଦର୍ଶନକାର ବୋଲନ୍ତି – ଈଶ୍ୱର ବିଷୟରେ ପ୍ରତ୍ୟକ୍ଷ ପ୍ରମାଣ ତ ନାହିଁ । ଆଉ ମଧ୍ୟ ଅନୁମାନ ପ୍ରମାଣଦ୍ୱାରା ଈଶ୍ୱର ସିଦ୍ଧ ହେଉ ନାହିଁ । ଯେହେତୁ ଈଶ୍ୱରଙ୍କ ସହିତ ସମ୍ବନ୍ଧାଭାବ ! ଶବ୍ଦ ପ୍ରମାଣଦ୍ୱାରା ଈଶ୍ୱର ପ୍ରତିପନ୍ନ ନୁହନ୍ତି । ଯେହେତୁ ଶ୍ରୁତି ମଧ୍ୟ ପ୍ରକୃତିର କାର୍ଯ୍ୟ । ସାଂଖ୍ୟମତରେ ପ୍ରମାଣ ତିନପ୍ରକାର—ପ୍ରତ୍ୟକ୍ଷ, ଅନୁମାନ ଓ ଶବ୍ଦ । ବିଷୟ ଓ ଇନ୍ଦ୍ରିୟର ସନ୍ନିକର୍ଷ ହେତୁ ଯେ ଅଧ୍ୟବସାୟ (ବୁଦ୍ଧିବୃତ୍ତିବିଶେଷ) ହୁଏ, ତାହାର ନାମ ପ୍ରତ୍ୟକ୍ଷ ପ୍ରମାଣ । ବ୍ୟାପ୍ୟ-ବ୍ୟାପକାଭାବ ଓ ପକ୍ଷଧର୍ମତା ଜ୍ଞାନଜନ୍ୟ ଯେ ବୁଦ୍ଧିବୃତ୍ତି, ତାହା ଅନୁମାନ ପ୍ରମାଣ ଏବଂ ଆପ୍ତବାକ୍ୟାର୍ଥଜନ୍ୟ ବାକ୍ୟାର୍ଥଜ୍ଞାନକୁ ଶବ୍ଦପ୍ରମାଣ ବୋଲା-ଯାଏ । ସାଂଖ୍ୟକାର ବୋଲନ୍ତି—କେବଳମାତ୍ର ଇନ୍ଦ୍ରିୟଗ୍ରାହ୍ୟ ଜ୍ଞାନକୁ ଯଦି ପ୍ରତ୍ୟକ୍ଷ ବୋଲାଯାଏ, ତେବେ ଭୁସୁମ ଭ୍ରମରେ କାର୍ପାସ ଆହରଣ କରିବାରେ ସନ୍ଦେହ କଣ ? ଯେହେତୁ ଇନ୍ଦ୍ରିୟ ସମୟବିଶେଷରେ ଭ୍ରାନ୍ତ ହୋଇ ପଡ଼େ । ଅତଏବ ଯାହା କ ଇନ୍ଦ୍ରିୟଦ୍ୱାରା ଉପଲବ୍ଧ ହୋଇ ବୁଦ୍ଧିବୃତ୍ତିଦ୍ୱାରା ପରିଗୃହୀତ ହୁଏ, ତାହାକୁ ପ୍ରତ୍ୟକ୍ଷ ପ୍ରମାଣ ବୋଲାଯାଏ । ପ୍ରତ୍ୟକ୍ଷ ପ୍ରମାଣ ସ୍ୱତଃସିଦ୍ଧ, ତାହାର ଆଉ ପ୍ରମାଣାନ୍ତରର ଆବଶ୍ୟକତା ନାହିଁ । ଅର୍ଥାତ୍ ତାହା କେତେବେଳେ ପ୍ରମାଣ ଓ କେତେବେଳେ ଅପ୍ରମାଣ ନୁହେ । ଅନୁମାନପ୍ରମାଣ ମଧ୍ୟ ବୁଦ୍ଧିବୃତ୍ତିବିଶେଷ । ବ୍ୟାପ୍ୟ-ବ୍ୟାପକଭାବ ଅର୍ଥରେ ସ୍ୱାଭାବିକ ସମ୍ବନ୍ଧ କାର୍ଯ୍ୟକାରଣ ସହଚର ପ୍ରଭୃତିର ଦର୍ଶନରେ ଅନୁମାନ ପ୍ରମାଣରେ ଜ୍ଞାନଲାଭ ହୁଏ । ଯେପରି ଅଶ୍ରୁପାତ

ଦର୍ଶନରେ କ୍ଲେଶାଦିର ଅନୁମାନ ଓ ନୀଳବର୍ଣ୍ଣ ମେଘ ଦର୍ଶନରେ ବୃଷ୍ଟିର ଅନୁମାନ ଏବଂ ଧୂମ ଦର୍ଶନରେ ଅଗ୍ନିର ଅନୁମାନ । ଅର୍ଥାତ୍ ଧୂମ ଦେଖି ଅଗ୍ନିର ଅସ୍ତିତ୍ୱ ସପ୍ରମାଣ ହୁଏ । ସୁତରାଂ ଯେଉଁଠାରେ ଧୂମ ଦେଖିଥାଉଁ, ସେହିଠାରେ ଅଗ୍ନିର ସମ୍ବନ୍ଧ ଦେଖିଥାଉଁ । ଶ୍ରବଣେନ୍ଦ୍ରିୟ-ଗ୍ରାହ୍ୟ ଭ୍ରମପ୍ରମାଦପରଶୂନ୍ୟ ଶବ୍ଦରୁ ଶବ୍ଦ ପ୍ରମାଣ । ଅର୍ଥାତ୍ ଶବ୍ଦଦ୍ୱାରା ଶବ୍ଦକର୍ତ୍ତାର ଅସ୍ତିତ୍ୱ ପ୍ରମାଣିତ ହୁଏ । ସେହି ଶବ୍ଦ ଯଦି ପ୍ରମାଦଶୂନ୍ୟ ହୁଏ, ତେବେ ପ୍ରମାଣରୂପେ ଗ୍ରହଣ କରାଯାଏ । ଅର୍ଥାତ୍ ଆପ୍ତବାକ୍ୟ ବେଦାଦି ଏହି ଶବ୍ଦ ପ୍ରମାଣ । ଯାହାହେଉ ପ୍ରତ୍ୟକ୍ଷ ପ୍ରମାଣ ସମସ୍ତ ପ୍ରମାଣର ମୂଳ; ଅନୁମାନ ଓ ଶବ୍ଦ ପ୍ରମାଣ ତାହାର ଅନ୍ତର୍ଭୁକ୍ତ; ଯେହେତୁ ପୂର୍ବେ କୌଣସି ବସ୍ତୁ ଦେଖିଥିଲେ ଓ କୌଣସି ଶବ୍ଦ ଶୁଣିଥିଲେ ତଦ୍ବିଷୟରେ ଯେ ଜ୍ଞାନ, ଏକ ହିସାବରେ ତାହାହିଁ ଅନୁମାନ । ସୁତରାଂ ଅନୁମାନ ଜ୍ଞାନର ସହିତ ପ୍ରତ୍ୟକ୍ଷଜ୍ଞାନର ସମ୍ବନ୍ଧ ଅନିବାର୍ଯ୍ୟ । ଶବ୍ଦ ପ୍ରମାଣ ସମ୍ବନ୍ଧରେ ଏହି ଯୁକ୍ତି ଅର୍ଥାତ୍ ଦେଖିଥିବା ପଦାର୍ଥ ଶବ୍ଦଦ୍ୱାରା ପ୍ରମାଣିତ ହୁଏ । ମହାରାଜ ! ସାଂଖ୍ୟକାର ଏହି ତ୍ରିବିଧ ପ୍ରମାଣ ଆଲୋଚନା କରି ତଦ୍ୱାରା ଈଶ୍ୱର ସିଦ୍ଧ ହୋଇନଥିବାର ଦେଖାଇଅଛନ୍ତି । ଅତଏବ ସାଂଖ୍ୟମତରେ ପ୍ରତ୍ୟକ୍ଷ ପ୍ରମାଣରେ ଈଶ୍ୱରର ସତ୍ତା ଲାଭ ହୁଏ ନାହିଁ ।

"ସମ୍ବନ୍ଧାଭାବାନ୍ନାନୁମାନଂ" ଅର୍ଥାତ୍ ସମ୍ବନ୍ଧାଭାବନିବନ୍ଧନ, ଅନୁମାନ ପ୍ରମାଣର ଅଭାବ । "ଶ୍ରୁତିରପି ପ୍ରଧାନକାର୍ଯ୍ୟତ୍ୱସ୍ୟ" ଅର୍ଥାତ୍ ଶ୍ରୁତି ମଧ୍ୟ ପ୍ରକୃତିଠାରୁ ଉଦ୍ଭବ ହୋଇଅଛି । ଆଉ ମଧ୍ୟ ସାଂଖ୍ୟକାର ବୋଲନ୍ତି ଯେ, ଈଶ୍ୱରଙ୍କୁ ସୃଷ୍ଟିକର୍ତ୍ତା ବୋଲି କହିଲେ ତାହାଙ୍କର ପକ୍ଷପାତ ଦୋଷ ଘଟୁଅଛି । ଯେହେତୁ ଏକ ଜଣକୁ ସୁଖୀ ଓ ଏକ ଜଣକୁ ଦୁଃଖୀ କରିବା ନିରପେକ୍ଷତାର କାର୍ଯ୍ୟ ନୁହେ । ମହାରାଜ ! ଅଚେତନ ପ୍ରକୃତିର ସୃଷ୍ଟିପ୍ରବୃତ୍ତି ଅସମ୍ଭବ ନୁହେ, ଯେପରି କି ଅୟସ୍କାନ୍ତମଣି ଲୌହ ଆକର୍ଷଣ କରିଥାଏ, ଅର୍ଥାତ୍ ମଣି ଅଚେତନ ହେଲେ ମଧ୍ୟ ତାହାର ଆକର୍ଷଣପ୍ରବୃତ୍ତି ସ୍ୱଭାବଧର୍ମ

ଅଟେ । "ଈଶ୍ୱରାସିଦ୍ଧେଃ" ଏହି ସୂତ୍ରରୁ ପ୍ରମାଣିତ ହେଉଅଛି ଯେ, ଈଶ୍ୱର ସିଦ୍ଧ କରାଯାଏ ନାହିଁ, ମାତ୍ର ଈଶ୍ୱର ଅଛନ୍ତି । ନଚେତ୍ "ଈଶ୍ୱରାଭାବାତ୍" ଏହିପରି ସୂତ୍ର ରଚନା କରିଥାନ୍ତେ । ପୁନଶ୍ଚ ସୂତ୍ର "ଇଦୃଶେଶ୍ୱରସିଦ୍ଧିଃ ସିଦ୍ଧା" "ସ ହି ସର୍ବବିତ୍ ସର୍ବକର୍ତ୍ତା ।" କେହି କେହି ଉକ୍ତ ସୂତ୍ର ଈଶ୍ୱର ସମ୍ବନ୍ଧରେ ପ୍ରଯୁକ୍ତ ନୁହେ, କିନ୍ତୁ ତାହା ମୁକ୍ତ ପୁରୁଷ ସମ୍ବନ୍ଧରେ ପ୍ରଯୁକ୍ତ ହୋଇଥିବାର ବୋଲନ୍ତି । କପିଳଙ୍କ ମତରେ ଜ୍ଞାନ କେବଳ ମୁକ୍ତିର ଉପାୟ । ଜଳମଗ୍ନ ଲୋକର ପୁନରୁତ୍ଥାନ ପ୍ରାୟ ଯଜ୍ଞାଦି କାର୍ଯ୍ୟରେ ପୁନରୁତ୍ଥାନ ଘଟିଥାଏ । ଅର୍ଥାତ୍ ଯଜ୍ଞାଦି ପୁଣ୍ୟାନୁଷ୍ଠାନର ପୁଣ୍ୟବଳ ଶେଷ ହୋଇଗଲେ ପୁନର୍ଜନ୍ମ ଓ ଜରା ଯନ୍ତ୍ରଣା ଭୋଗିବାକୁ ପଡ଼ିଥାଏ । ବସ୍ତୁତଃ ଇଦୃଶେଶ୍ୱର ସିଦ୍ଧିଃସିଦ୍ଧା, ଏହାର ଅର୍ଥ ସେପରି ଅନିର୍ବଚନୀୟ ପୁରୁଷବିଶେଷକୁ ଈଶ୍ୱର ବୋଇଲେ ବୋଲାଯାଇ ପାରେ । ମହାରାଜ ! କପିଳଙ୍କ ମତରେ ବେଦ ପୌରୁଷେୟ ନୁହେ ବା ଅପୌରୁଷେୟ ନୁହେ, କିନ୍ତୁ ବେଦ ଆପେ ଆପେ ପ୍ରବୃତ୍ତ ହୋଇଅଛି । ଆଉ ମଧ୍ୟ କପିଳଙ୍କ ମତରେ ଆତ୍ମା ଏକ ନୁହେ; ସେ କହନ୍ତି, ଶରୀରଭେଦରେ ନାନା ପୁରୁଷ ଓ ନାନା ଆତ୍ମା । ଯଦି ଏକ ପୁରୁଷ ବା ଆତ୍ମା ସମସ୍ତ ଶରୀରର ଅଧିଷ୍ଠାତା ହୁଅନ୍ତି, ତେବେ ଏକର ସୁଖଦୁଃଖରେ ଓ ଜନ୍ମମରଣରେ ଅପରର ସୁଖ-ଦୁଃଖ ଓ ଜନ୍ମମରଣ ପ୍ରଭୃତି ଘଟୁଥାନ୍ତା । ଯାହାହେଉ, ଜନ୍ମମୃତ୍ୟୁ ଓ ସୁଖଦୁଃଖ ଲକ୍ଷ ହେଉଥିବା ସ୍ଥଳେ କୌଣସିମତେ ପୁରୁଷ ବା ଆତ୍ମା ପ୍ରତ୍ୟେକ ଶରୀରର ଏକ ଅଧିଷ୍ଠାତା ହୋଇ ନ ପାରେ ।

ମହାରାଜ ! ସ୍ଥୂଳ ଓ ସୂକ୍ଷ୍ମଭେଦରେ ଶରୀର ଦୁଇ ପ୍ରକାର । ମାତା ଓ ପିତାଠାରୁ ଯେଉଁ ଶରୀରର ଉତ୍ପତ୍ତି, ତାହା ସ୍ଥୂଳଶରୀର । ସେହି ସ୍ଥୂଳ-ଶରୀର ଅଦୃଷ୍ଟ ଭୋଗ ଶେଷ ହେଲେ ଧ୍ୱଂସ ହୁଏ । ସୂକ୍ଷ୍ମଶରୀର ବା ଲିଙ୍ଗଶରୀର ଅର୍ଥରେ ଆତ୍ମାକୁ ବୁଝାଏ । କର୍ମ ଅନୁସାରେ ସୂକ୍ଷ୍ମଶରୀରର ଭୋଗାଭୋଗ ଘଟିଥାଏ । ଊର୍ଦ୍ଧ୍ୱଗମନର ନାମ ସ୍ୱର୍ଗଗମନ ଓ ଅଧୋଗମନର ନାମ

ନରକଗମନ । ଧର୍ମଫଳରେ ସ୍ୱର୍ଗ ଓ ଅଧର୍ମଫଳରେ ନରକଗତି ଘଟିଥାଏ । ସ୍ୱର୍ଗର ଲକ୍ଷଣ ବାଚସ୍ପତି ମିଶ୍ରପ୍ରମୁଖ ପଣ୍ଡିତମାନେ ଉଲ୍ଲେଖ କରିଅଛନ୍ତି । ଯଥା :—

"ଯେନ ଦୁଃଖେନ ସମ୍ଭିନ୍ନଂ ନ ଚ ଗ୍ରସ୍ତମନନ୍ତରଂ ।
ଅଭିଳାଷୋପନୀତଞ୍ଚ ତତ୍ସୁଖଂ ସ୍ୱପଦାସ୍ପଦଂ ॥"

ଅର୍ଥାତ୍ ଦୁଃଖବିରୋଧୀ ସୁଖବିଶେଷଃ ସ୍ୱର୍ଗଃ । ଜ୍ଞାନର ଫଳ, ମୁକ୍ତି ଓ ଅଜ୍ଞାନର ଫଳ ବନ୍ଧନ । କପିଳଙ୍କ ମତରେ ତତ୍ତ୍ୱ ସାକ୍ଷାତ୍କାର ଅର୍ଥାତ୍ ପ୍ରକୃତିପୁରୁଷର ଭେଦଜ୍ଞାନ ଉପସ୍ଥିତ ହେଲେ ଧର୍ମାଧର୍ମ ପ୍ରଭୃତି ଭୋଗାଦି କାରଣ ଲୋପ ପାଏ । ଭୋଗାଦି ଅବଶିଷ୍ଟ ନ ଥିଲେ କୃତାର୍ଥତା ଅର୍ଥାତ୍ ସେହି କୃତାର୍ଥତାର ନାମ କୈବଲ୍ୟ ବା ନିର୍ବାଣ ମୁକ୍ତି । ଏହି ଆତ୍ୟନ୍ତିକ ଦୁଃଖନିବୃତ୍ତି ସାଂଖ୍ୟର ମୁଖ୍ୟ ପ୍ରତିପାଦ୍ୟ ।

ମହାରାଜ ! ଯାହା ହେଉ ଦୃଶ୍ୟମାନଜନ୍ୟ ଉପାୟ ସର୍ବଥା ଫଳପ୍ରଦ ନୁହେ । ଅତଏବ ସାଂଖ୍ୟକାରିକା ଯଥା—

"ଦୁଃଖତ୍ରୟାଭିଘାତା ଜ୍ଜିଜ୍ଞାସା ତଦବଘାତକେ ହେତୌ ।
ଦୃଷ୍ଟେ ସା ପାର୍ଥା ଚେନ୍ନୈକାନ୍ତାତ୍ୟନ୍ତତୋଽଭାବାତ୍ ।"

ଅର୍ଥାତ୍ ସୁଗମଜନ୍ୟ ଓ ଦୃଷ୍ଟ ଉପାୟଦ୍ୱାରା ଦୁଃଖୋତ୍ପତ୍ତି ନିବୃତ୍ତିର ଏକାନ୍ତ ଅତ୍ୟନ୍ତାଭାବ ଘଟିଥାଏ । ସାରକଥା ଏହି ଯେ, ଯେଉଁ କାର୍ଯ୍ୟର ଅନୁଷ୍ଠାନରେ ଧର୍ମର ସହାୟତା ଅବଲମ୍ବନ କରାଯାଏ, ସେହି ପଦାର୍ଥର ନାମ ସୁଖ, ଆନନ୍ଦ ଓ ଶାନ୍ତି । ସଂସାରରେ ଦୁଃଖର ଅନ୍ତ ନାହିଁ, ସେହି ହେତୁ ମନୁଷ୍ୟ ଦୁଃଖନିବୃତ୍ତି ଓ ସୁଖସାଧନର ଉପାୟ ଅବଲମ୍ବନ କରୁଥାଏ । ଯେତେବେଳେ କୌଣସିମତେ ଦୁଃଖନିବୃତ୍ତି ବା ସୁଖସାଧନ ହୋଇ ନ ପାରେ, ସେତେବେଳେ ମନୁଷ୍ୟ ଧର୍ମର ସହାୟତା ଅବଲମ୍ବନ କରିଥାଏ । ତେତେବେଳେ କେବଳ ଧର୍ମ ଦୁଃଖନିବୃତ୍ତି ଓ ସୁଖ-

ସାଧନର ଅଦ୍ୱିତୀୟ ଉପାୟ ବୋଲି ମନେ ହୁଏ । ସତ୍ ହେଉ ବା ଅସତ୍ ହେଉ ସମସ୍ତ କାର୍ଯ୍ୟର ମୂଳ ଲକ୍ଷ୍ୟ ସୁଖସାଧନ । ଯେ କି ଆତ୍ମହତ୍ୟା କରେ, ତାହାର ବିଶ୍ୱାସ ଯେ ମରଣ କେବଳ ଶାନ୍ତି ଓ ସୁଖସାଧକ । ସୁତରାଂ ସମସ୍ତ କାର୍ଯ୍ୟର ଲକ୍ଷ୍ୟ ଚରମ ସୁଖାନ୍ୱେଷଣ । ଅର୍ଥାତ୍ ଯୋଗୀମାନେ ଧ୍ୟାନ କରିଥାନ୍ତି, ଜପୀ ଜପ କରେ, ଚୋର ଚୋରି କରେ, ବଞ୍ଚକ ପ୍ରବଞ୍ଚନା କରେ, ଶଠ ଠକବୃତ୍ତି ଅବଲମ୍ବନ କରେ ଓ ନରହନ୍ତା ନରହତ୍ୟା କରେ । ଯାହାହେଉ ସମସ୍ତଙ୍କର ଲକ୍ଷ୍ୟ କେବଳ ଦୁଃଖନିବୃତ୍ତି ଓ ସୁଖସାଧନ । ଫଳରେ ଯାହାର ଯେପରି ଜ୍ଞାନ, ସେ ସେହିପରି ସୁଖସାଧନରେ ପ୍ରବୃତ୍ତ ହୋଇଥାଏ । ଶାସ୍ତ୍ରକାରମାନେ ଲୋକମାନଙ୍କୁ ସତ୍‌ପଥାନୁଯାୟୀ ସୁଖାନ୍ୱେଷୀ କରାଇବା ସକାଶେ ଉଜ୍ଜ୍ୱଳ-ବର୍ତ୍ତିକା ଧାରଣ କରି ଦେଇଅଛନ୍ତି । ମହାରାଜ ! ଯେଉଁମାନେ ବିବେକତାସହକାରେ ସୁଖାନ୍ୱେଷଣରେ ପ୍ରବୃତ୍ତ, ସେହିମାନେ ଶାନ୍ତି-ସୁଧାପାନରେ ସମର୍ଥ ହୋଇଥାନ୍ତି । ଯେଉଁମାନେ ଦୁଷ୍କର୍ମ ଦ୍ୱାରା ସୁଖା-ନ୍ୱେଷଣରେ ପ୍ରବୃତ୍ତ, ସେହିମାନଙ୍କ ପରିଣାମ ଦୁଃଖବୃଦ୍ଧି ଅବଶ୍ୟମ୍ଭାବୀ । ଅତଏବ ସାଂଖ୍ୟଦର୍ଶନର ମୂଳ ଲକ୍ଷ୍ୟ ଆତ୍ୟନ୍ତିକ ଦୁଃଖନିବୃତ୍ତି ।

ଇତି ସାଂଖ୍ୟଦର୍ଶନ ବିଚାର ତୃତୀୟ ପରିଚ୍ଛେଦ ସମାପ୍ତ ।

# ଚତୁର୍ଥ ପରିଚ୍ଛେଦ ।

## ବୈଶେଷିକ ଦର୍ଶନ ବିଚାର ।

ଏପରି ରାଜା ବୋଲିବାକୁ ଆରମ୍ଭ କଲେ । ମହାଭାଗ ! ଆଉ ସାଂଖ୍ୟଦର୍ଶନର ବିଷୟ ବିଶେଷ କିଛି ନ ବୋଲି ବୈଶେଷିକ ଦର୍ଶନର ସାର ସାର ବିଷୟ ଶୁଣାଇ କୃତାର୍ଥ କରିବା ହେବେ ।

ସାଧୁ ମହାରାଜ ! ବୈଶେଷିକ ଦର୍ଶନର ପ୍ରଥମ ସୂତ୍ର — "ଅଥାତୋ-ଧର୍ମଂ ବ୍ୟାଖ୍ୟାସ୍ୟାମଃ" ଅନନ୍ତର ଧର୍ମବ୍ୟାଖ୍ୟା କରନ୍ତି । ତାହାର ପର "ଯତୋଽଭ୍ୟୁଦୟନିଃଶ୍ରେୟସସିଦ୍ଧିଃ ସ ଧର୍ମଃ" ଅର୍ଥାତ୍ ଯାହାଦ୍ୱାରା ତତ୍ତ୍ୱଜ୍ଞାନ ଲାଭ ହୁଏ, ଯେ କି ଆତ୍ୟନ୍ତିକ ଦୁଃଖନିବୃତ୍ତି ବା ମୋକ୍ଷଲାଭର ହେତୁ ହୁଅ, ତାହାର ନାମ ଧର୍ମ । ବୈଶେଷିକ ଦର୍ଶନର ପ୍ରଣେତା କଣାଦ ମହର୍ଷି ମୁକ୍ତି ସମ୍ବନ୍ଧରେ ବିଶେଷ କିଛି ପାର୍ଥକ୍ୟ ଦେଖାଇ ନାହାନ୍ତି । ମାତ୍ର ପଦାର୍ଥ ସମ୍ବନ୍ଧରେ ବେଦାନ୍ତ ଓ ସାଂଖ୍ୟ ଅପେକ୍ଷା ବିଶେଷ ପାର୍ଥକ୍ୟ ଦେଖାଇଅଛନ୍ତି । ଯଥାଃ ପଦାର୍ଥ ଦୁଇ ପ୍ରକାର, ଭାବ ଓ ଅଭାବ । ଭାବପଦାର୍ଥ ଛ ପ୍ରକାର । ଯଥାଃ —ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ । ଏହି ଷଡ୍‌ବିଧ ଭାବପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ ପ୍ରଦର୍ଶନ-ପୂର୍ବକ ନିଃଶ୍ରେୟସ ଲାଭର କାରଣ ନିର୍ଦ୍ଦେଶ ବୈଶେଷିକ ଦର୍ଶନର ମୁଖ୍ୟ ଉଦ୍ଦେଶ୍ୟ । ସାଧର୍ମ୍ୟ ଅର୍ଥରେ ସମାନ ଧର୍ମ । ଯେପରି କି ପୃଥିବୀ, ଜଳ ଓ ତେଜ ପ୍ରଭୃତି ନବବିଧ ଦ୍ରବ୍ୟର ସାଧର୍ମ୍ୟ ଦ୍ରବ୍ୟତ୍ୱ, ଦ୍ରବ୍ୟର ବୈଧର୍ମ୍ୟ, ଗୁଣତ୍ୱ ଓ କର୍ମତ୍ୱ; ଯେହେତୁ ଦ୍ରବ୍ୟତ୍ୱ ଦ୍ରବ୍ୟରେ ଥାଏ ଓ ଗୁଣତ୍ୱ ଗୁଣରେ ଥାଏ । ଏହି ମତରେ ଦ୍ରବ୍ୟ ନଅ ପ୍ରକାର । ଯଥା—କ୍ଷିତି, ଅପ୍, ତେଜ, ବାୟୁ, ଆକାଶ, କାଳ, ଦିକ୍, ଆତ୍ମା ଓ ମନ । ଗୁଣ ଚବିଶ ପ୍ରକାର । ଯଥାଃ ରୂପ, ରସ, ଗନ୍ଧ, ସ୍ପର୍ଶ, ସଂଖ୍ୟା, ପରିମାଣ, ପୃଥକ୍ତ୍ୱ, ସଂଯୋଗ, ବିଭାଗ, ପରତ୍ୱ, ଅପରତ୍ୱ, ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ଗୁରୁତ୍ୱ, ଦ୍ରବତ୍ୱ, ସ୍ନେହ, ସଂସ୍କାର, ଧର୍ମ, ଅଧର୍ମ, ଓ ଶବ୍ଦ । କର୍ମ ପାଞ୍ଚ ପ୍ରକାର । ଯଥାଃ— ଉତ୍କ୍ଷେପଣ ଅବକ୍ଷେପଣ, ଆକୁଞ୍ଚନ, ପ୍ରସାରଣ, ଓ ଗମନ । ସାମାନ୍ୟ ଅର୍ଥାତ୍ ଜାତି ଦୁଇ ପ୍ରକାର । ଯଥାଃ —ସାମାନ୍ୟ ବା ସାଧାରଣ ଜାତି; ଏହି ଜାତିର ନାମ ପର । ବିଶେଷ ଜାତି, ଏହାର ନାମ ଅପର । ପ୍ରାଣିତ୍ୱ ବୋଇଲେ ସାଧାରଣ ଜାତିକୁ ବୁଝାଏ; ଏହାର ନାମ ପର । ମନୁଷ୍ୟତ୍ୱ ଓ ପଶୁତ୍ୱ ବୋଇଲେ ଅପର ଅର୍ଥାତ୍ ବିଶେଷ ଜାତିକୁ ବୁଝାଏ ।

ବିଶେଷ ପଦାର୍ଥ ଏକ ମାତ୍ର, ତାହାହିଁ ପରମାଣୁର ବିଶେଷତ୍ୱ । ପରମାଣୁର ସମଷ୍ଟିରେ ପୃଥିବ୍ୟାଦି ଗଠିତ । ଯେଉଁ ପରମାଣୁରେ ପୃଥିବୀର ଉତ୍ପତ୍ତି ଓ ଯେଉଁ ପରମାଣୁରେ ଜଳର ଉତ୍ପତ୍ତି, ସେ ଉଭୟ ମଧ୍ୟରେ ଯେ କ ବିଶେଷତ୍ୱ ତାହାର ନାମ ବିଶେଷ ପଦାର୍ଥ । ବିଶେଷ ପଦାର୍ଥର ବିଶ୍ଳେଷଣ ହେତୁ ଏହି ଦର୍ଶନର ନାମ ବୈଶେଷିକ ଦର୍ଶନ । ସମବାୟ ଅର୍ଥରେ ନିତ୍ୟସମ୍ବନ୍ଧ ଅର୍ଥାତ୍ ଘଟର ସହିତ କପାଳର, କପାଳର ସହିତ କପାଳିକାର, ବସ୍ତ୍ରର ସହିତ ସୂତର ଓ ଜାତିର ସହିତ ବ୍ୟକ୍ତିର ଯେ କ ନିତ୍ୟସମ୍ବନ୍ଧ ବିଦ୍ୟମାନ ଥାଏ, ତାହାର ନାମ ସମବାୟ । ଅଭାବ ଦୁଇ ପ୍ରକାର । ଯଥା: — ସଂସର୍ଗାଭାବ ଓ ଅନ୍ୟୋନ୍ୟାଭାବ । ସଂସର୍ଗାଭାବ ତିନି ପ୍ରକାର । ଯଥା:— ଧ୍ୱଂସାଭାବ, ପ୍ରାଗ୍‌ଭାବ ଓ ଅତ୍ୟନ୍ତାଭାବ । ସ୍ଥୂଳତଃ ଭାବର ଅଭାବକୁ ଅଭାବ ବୋଲାଯାଏ । ଯେପରି ଆଲୋକର ଅଭାବ ଅନ୍ଧକାର । ଘଟୋଧ୍ୱସ୍ତଃ, ଘଟ ଥିଲା, ଧ୍ୱଂସ ହୋଇଅଛି, ଦେହ ଥିଲା, ଭସ୍ମସାତ୍ ହୋଇଅଛି, ଇତ୍ୟାଦି ପ୍ରତୀତିର ନାମ ଧ୍ୱଂସାଭାବ । ଇହ କପାଲେ ଘଟୋଭବିତା — ଏହି କପାଳରେ ଘଟ ହେବ, ଏହି ସୂତରେ ବସ୍ତ୍ର ହେବ, ଇତ୍ୟାଦି ପ୍ରତୀତିର ନାମ ପ୍ରାଗ୍‌ଭାବ । ଅତ୍ୟନ୍ତାଭାବ ଅର୍ଥରେ ଏକରେ ଅନ୍ୟର ଐକାନ୍ତ୍ୟାଭାବ ଅର୍ଥାତ୍ ଭୂତଳରେ ଘଟାଭାବ ଓ ଜଡ଼ ଦେହରେ ଚୈତନ୍ୟାଭାବ ଇତ୍ୟାଦି ପ୍ରତୀତିର ନାମ ନିତ୍ୟ ତ୍ରୈକାଳିକ ସଂସର୍ଗାବଚ୍ଛିନ୍ନ ଅତ୍ୟନ୍ତାଭାବ । ଘଟଃ ପଟାତ୍ ଭିନ୍ନଃ ଅର୍ଥାତ୍ ଘଟ ପଟ ନୁହେ, ଅତଏବ ଘଟ ପଟରୁ ଭିନ୍ନ ଇତ୍ୟାଦି ପ୍ରତୀତିର ନାମ ଅନ୍ୟୋନ୍ୟାଭାବ । ପରମାଣୁର ନିତ୍ୟତା ସମ୍ବନ୍ଧରେ ସୂତ୍ର ଯଥା: — "ସଦ୍‌କାରଣବନ୍ନିତ୍ୟଂ" ଅର୍ଥାତ୍ ସତ୍ କାରଣର ମଧ୍ୟରେ ଯାହା ଅକାରଣବତ୍ ନୁହେ ଅର୍ଥାତ୍ ଯାହାର କାରଣ ନାହିଁ, ସେହି କେବଳ ନିତ୍ୟ । ଏହି ମତରେ ଏକ ମାତ୍ର ପରମାଣୁ ସତ୍ ପଦାର୍ଥ ଓ ନିତ୍ୟ । ସ୍ଥୂଳତଃ ପରମାଣୁବାଦ କଣାଦ ଦର୍ଶନର ସାର ସିଦ୍ଧାନ୍ତ ଅର୍ଥାତ୍ ସଂସାର ପରମାଣୁ ସଂଯୋଗରେ ଉତ୍ପନ୍ନ ହୋଇଥିବାର ସ୍ୱୀକାର କରିଅଛନ୍ତି । ପୃଥିବୀର ସମସ୍ତ

ପଦାର୍ଥ ସୃଷ୍ଟି, ଅର୍ଥାତ୍ ସୂକ୍ଷ୍ମ ପରମାଣୁର ସମଷ୍ଟି ମାତ୍ର । ସମସ୍ତ ପଦାର୍ଥ ବିଭାଗ କରୁ କରୁ ଏକ ସୂକ୍ଷ୍ମତମ ଅବସ୍ଥା ପ୍ରାପ୍ତ ହୁଏ । ଯେଉଁ ଅବସ୍ଥା ପ୍ରାପ୍ତ ହେଲେ ଆଉ ପୁନରାୟ ବିଭାଗ କରା ଯାଇ ନ ପାରେ, ସେହି ଅବିଭାଜ୍ୟ ସୂକ୍ଷ୍ମତମ ପରମାଣୁର ନାମ ନିତ୍ୟ ପରମାଣୁ । ସେହି ପରମାଣୁର ସଂଯୋଗରେ ସ୍ଥୂଲ ଜଗତ୍ ଉତ୍ପନ୍ନ ହୋଇଅଛି । ପରମାଣୁର ଲକ୍ଷଣ ଯଥା:—"ଜାଲ-ସୂର୍ଯ୍ୟମରୀଚିସ୍ଥଂ ଯତ୍ ସୂକ୍ଷ୍ମଂ ଦୃଶ୍ୟତେ ରଜଃ । ତସ୍ୟ ଷଷ୍ଠତମୋ ଭାଗଃ ପରମାଣୁଃ ସ ଉଚ୍ୟତେ ।" ମହାରାଜ ! କଣାଦ ମତରେ ଦ୍ରବ୍ୟାଦି ସମସ୍ତ ପଦାର୍ଥର ତତ୍ତ୍ୱଜ୍ଞାନ ଲାଭ ଆତ୍ୟନ୍ତିକ ଦୁଃଖନିବୃତ୍ତି ବା ମୋକ୍ଷଲାଭର ପ୍ରଧାନ ଉପାୟ । ଦେହାନ୍ତର ଗ୍ରହଣ ଓ ଭୋଗାଭୋଗ ଏହି ସମସ୍ତ ଅଦୃଷ୍ଟ-ସାପେକ୍ଷ କର୍ମାନୁଷ୍ଠାନଜନ୍ୟ କର୍ମର ଶୁଭାଶୁଭ ଫଳଭୋଗ ନିମିତ୍ତ ଶରୀରର ପ୍ରୟୋଜନ ହୁଏ । ତାହାର ନାମ ଅଦୃଷ୍ଟ । ତତ୍ତ୍ୱଜ୍ଞାନଦ୍ୱାରା ସେହି ଅଦୃଷ୍ଟର ନାଶ ହୁଏ । ଅଦୃଷ୍ଟ ନାଶ ହେଲେ ଜୀବର ମୋକ୍ଷଲାଭ ହୁଏ । କଣାଦଙ୍କ ମତରେ ଈଶ୍ୱରଙ୍କ ସହିତ ଜୀବର କିଛିମାତ୍ର ସମ୍ବନ୍ଧ ନାହିଁ । ଯେହେତୁ ଦ୍ରବ୍ୟାଦି ସପ୍ତ ପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ ଜ୍ଞାନ ମୁକ୍ତିଲାଭର ହେତୁ ଅଟେ । ବୈଶେଷିକ ଈଶ୍ୱରଙ୍କ କାର୍ଯ୍ୟକାରଣତା ସ୍ୱୀକାର ନ କରି କେବଳ ଅଦୃଷ୍ଟ ସୃଷ୍ଟିର ମୂଳାଧାର ବୋଲି ସ୍ୱୀକାର କରନ୍ତି । ସେ ବିଷୟରେ ସୂତ୍ର ଯଥା : —

"ଅଗ୍ନେରୂର୍ଦ୍ଧ୍ୱଜ୍ୱଲନଂ ବାୟୋସ୍ତିର୍ଯ୍ୟଗ୍ଗମନଂ
ଅଣୂନାଂ ମନସଶ୍ଚାଦ୍ୟଂ କର୍ମାଦୃଷ୍ଟକାରିତଂ ।"

ଅର୍ଥାତ୍ ଅଗ୍ନିର ଊର୍ଦ୍ଧ୍ୱ ଜ୍ୱଳନ, ବାୟୁର ତିର୍ଯ୍ୟକ୍ ଗମନ, ପରମାଣୁ ଓ ମନର ଆଦ୍ୟକ୍ରିୟା ଅଦୃଷ୍ଟଦ୍ୱାରା ନିଷ୍ପନ୍ନ ହୋଇଥାଏ । ଫଳରେ ଅଦୃଷ୍ଟ-ବଶରେ ପରମାଣୁର କ୍ରିୟା ଓ ସେହି ପରମାଣୁର କ୍ରିୟା ହେତୁ ସୃଷ୍ଟି; ସୁତରାଂ ସୃଷ୍ଟି ସହିତ ଈଶ୍ୱରଙ୍କର କୌଣସି ସମ୍ବନ୍ଧ ନାହିଁ । ଅତଏବ ପରମାଣୁ ଓ ଅଦୃଷ୍ଟ ସମସ୍ତ ପଦାର୍ଥର ମୂଳାଧାର । ଅଦୃଷ୍ଟର ଅଭାବ ହେଲେ

ଶରୀରର ସଂଯୋଗର ଅଭାବ ଘଟିଥାଏ । ସେହି ଶରୀରର ସଂଯୋଗର ଅଭାବକୁ ମୋକ୍ଷ ବା ଆତ୍ୟନ୍ତିକ ଦୁଃଖନିବୃତ୍ତି ବୋଲାଯାଏ । ବୈଶେଷିକ ମତରେ ପ୍ରମାଣ ଦୁଇପ୍ରକାର । ଯଥା : ପ୍ରତ୍ୟକ୍ଷ ଓ ଅନୁମାନ । ଶବ୍ଦ ଅନୁମାନର ଅନ୍ତର୍ଗତ, ଏଣୁ ପ୍ରମାଣାନ୍ତର ନୁହେ । ଯେପରି ଘଟ ଅଣ ବୋଲି କହିଲେ ଶବ୍ଦ ଶୁଣି ସେହି ଘଟରେ ଅନୁମିତ ଜନ୍ମେ । ସୂତ୍ର—"ତଦ୍‌ବଚନାଦାମ୍ନାୟସ୍ୟ ପ୍ରାମାଣ୍ୟଂ" ଅର୍ଥାତ୍ ବେଦ ଈଶ୍ୱରଙ୍କ ବାକ୍ୟ ଥାଇ ଯଥାର୍ଥ ଜ୍ଞାନ ଜନ୍ମାଇବା ହେତୁ ପ୍ରମାଣ । ସୂତ୍ର ଯଥା "ବୁଦ୍ଧିପୂର୍ବା ବାକ୍ୟକୃତିର୍ବେଦେ" ଅର୍ଥାତ୍ ବୁଦ୍ଧିପୂର୍ବକ ବେଦବାକ୍ୟ ରଚନା ହୋଇଅଛି, ଏଣୁ ବେଦ ଈଶ୍ୱରପ୍ରଣୀତ ଓ ଅଭ୍ରାନ୍ତ ।

ରାଜା ମହାଭାଗ ! ଇତିପୂର୍ବେ ଆପଣ ବୁଝାଇଥିଲେ, କଣାଦ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ପୁନରପି ବେଦ ଈଶ୍ୱର ପ୍ରଣୀତ ଓ ଅଭ୍ରାନ୍ତ ବୋଲିବା କଣାଦ ମହର୍ଷିଙ୍କର ଅସଙ୍ଗତ ନୁହେ କି ?

ସାଧୁ—ମହାରାଜ ! "ତଦ୍‌ବଚନାଦାମ୍ନାୟସ୍ୟ ପ୍ରାମାଣ୍ୟଂ" ଏଠାରେ ଉପସ୍କାର ନାମକ ଭାଷ୍ୟକାର "ତଦିତ୍ୟନୁପକ୍ରାନ୍ତମପି ପ୍ରସିଦ୍ଧି ସିଦ୍ଧତୟା ଈଶ୍ୱରଂ ପରାମୃଶ୍ୟତ ।" ଅର୍ଥାତ୍ ପ୍ରସିଦ୍ଧି ସିଦ୍ଧି ହେତୁ ସର୍ବପ୍ରସିଦ୍ଧିନିବନ୍ଧନ ତତ୍ ଶବ୍ଦରେ ଈଶ୍ୱରଙ୍କୁ ବୁଝାଏ । "ଓଁ ତତ୍‌ସଦିତିନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ" ଏହି ଶ୍ରୁତି ବାକ୍ୟରେ ଓଁ ତତ୍ ଶବ୍ଦ ବ୍ରହ୍ମବୋଧକ, ସୁତରାଂ ତତ୍ ପଦରେ ଈଶ୍ୱର ଗୃହୀତ ହୁଅନ୍ତି ।

ମହାରାଜ ! କଣାଦଙ୍କର ଏହି ପରମାଣୁବାଦର ଖଣ୍ଡନ ପ୍ରସଙ୍ଗରେ ବେଦାନ୍ତଦର୍ଶନରେ ଶଙ୍କରାଚାର୍ଯ୍ୟ ଲେଖିଅଛନ୍ତି, ଯେତେବେଳେ ପରମାଣୁର ସଂଯୋଗରେ ଦୃଷ୍ଟପଦାର୍ଥର ଉତ୍ପତ୍ତି ହୁଏ, ସେତେବେଳେ ପରମାଣୁର ସୂକ୍ଷ୍ମାଦପି ସୂକ୍ଷ୍ମ ଅବୟବ ଥିବାର କଳ୍ପନା କରିବାକୁ ହେବ । ନଚେତ୍ ପରମାଣୁ ସ୍ଥୂଳ କାର୍ଯ୍ୟର ଉତ୍ପାଦକ ହେବା ଅସମ୍ଭବ । ସୁତରାଂ ସାହାର

ଅବୟବ ଅଛୁ, ସେ ଅବଭାଜ୍ୟ ଓ ଅଦୃଷ୍ଟ ନୁହେ, ଅତଏବ ପରମାଣୁର ନିତ୍ୟତ୍ୱ ସପ୍ରମାଣ ନୁହେ । ମହାରାଜ ! ଏହି ବୈଶେଷିକ ଦର୍ଶନ ବେଦାନ୍ତ ଦର୍ଶନର ପୂର୍ବ ରଚିତ ବୋଲି ପୂର୍ବୋକ୍ତ ଯୁକ୍ତିରୁ ପ୍ରମାଣିତ ହେଉଅଛି । ମହର୍ଷି ଉଲୂକ କଣଂପବଂଶକ ଓ କଣାଦ ନାମରେ ଖ୍ୟାତ । ଏଣୁ ଏହି ଦର୍ଶନର ଅପର ନାମ ଉଲୂକ ଦର୍ଶନ ।

ଇତି ବୈଶେଷିକ ଦର୍ଶନ ବିଚାର ଚତୁର୍ଥ ପରିଚ୍ଛେଦ ସମାପ୍ତ ।

---

## ପଞ୍ଚମ ପରିଚ୍ଛେଦ ।



### ନ୍ୟାୟ ଦର୍ଶନ ବିଚାର ।

ରାଜା  ମହାଭାଗ ! ଆଉ କିଛି ବୈଶେଷିକ ଦର୍ଶନର ବିଷୟ ନ ବୋଲି ନ୍ୟାୟ ଦର୍ଶନରୁ ସାର ସାର ବିଷୟ ଶୁଣାଇ ଚରିତାର୍ଥ କରିବାହେବେ ।

ସାଧୁ  ମହାରାଜ ! ନ୍ୟାୟ ଦର୍ଶନର ମଧ୍ୟ ସାର ସିଦ୍ଧାନ୍ତ ସେହି ଆତ୍ୟନ୍ତିକ ଦୁଃଖନିବୃତ୍ତିରୂପ ଅପବର୍ଗ ବା ମୁକ୍ତିଲାଭ । ସୂତ୍ର ଯଥା:— "ଦୁଃଖଜନ୍ମପ୍ରବୃତ୍ତିଦୋଷମିଥ୍ୟାଜ୍ଞାନାନା ମୁତ୍ତରୋତ୍ତରାପାୟେ ତଦନନ୍ତରାପାୟାଦପବର୍ଗଃ" ଏହି ସୂତ୍ରର ପକ୍ଷିଲସ୍ୱାମୀ ଭାଷ୍ୟ ଯଥା:—ଯଦା ତୁ ତତ୍ତ୍ୱଜ୍ଞାନାତ୍ ମିଥ୍ୟାଜ୍ଞାନମପୈତି ତଦା ମିଥ୍ୟାଜ୍ଞାନାପାୟେ ଦୋଷା ଅପଯାନ୍ତି । ଦୋଷାପାୟେ ପ୍ରବୃତ୍ତିରପୈତି ପ୍ରବୃତ୍ତ୍ୟପାୟେ ଜନ୍ମ ଅପୈତି ଜନ୍ମାପାୟେ ଦୁଃଖଂ ଅପୈତି ଦୁଃଖାପାୟେ ଚାତ୍ୟନ୍ତିକୋଽପବର୍ଗୋ ନିଃଶ୍ରେୟସ ମିତି ।" ଅର୍ଥାତ୍ ନିଃଶ୍ରେୟସ କିମ୍ବା ତ୍ରିବିଧ ଦୁଃଖନିବୃତ୍ତିର ନାମ ମୁକ୍ତି । ସେହି ମୁକ୍ତି ସକାଶେ ତ୍ରିବିଧ ଦୁଃଖନିବୃତ୍ତିର ଅବଶ୍ୟକ । ପ୍ରବୃତ୍ତିର ବିନାଶ ହେଲେ

ତ୍ରିବିଧ ଦୋଷ ଅର୍ଥାତ୍ ରାଗ, ଦ୍ୱେଷ ଓ ମୋହ ବିଦୂରିତ ହୁଏ । ଦୋଷ-ନିବାରଣରେ ମିଥ୍ୟାଜ୍ଞାନ ନିବାରିତ ହୁଏ । ମିଥ୍ୟାଜ୍ଞାନ ନିବୃତ୍ତ ହେଲେ ତତ୍ତ୍ୱଜ୍ଞାନ ଲାଭ ହୁଏ । ଅତଏବ ତତ୍ତ୍ୱଜ୍ଞାନ ଲାଭ ନ ହେଲେ ମିଥ୍ୟାଜ୍ଞାନ ନିବାର ଧ୍ୱଂସ ହୁଏ ନାହିଁ । ସୁତରାଂ ତତ୍ତ୍ୱଜ୍ଞାନ ଲାଭ କରି ପାରିଲେ ଆତ୍ୟନ୍ତିକ ଦୁଃଖ ନାଶ ବା ନିଃଶ୍ରେୟସ ଲାଭ ହୁଏ । ଏହି ବିଷୟରେ ଗୌତମ ସୂତ୍ର ଯଥା : "ପ୍ରମାଣ ପ୍ରମେୟ ସଂଶୟ ପ୍ରୟୋଜନ ଦୃଷ୍ଟାନ୍ତ ସିଦ୍ଧାନ୍ତାବୟବ ତର୍କ ନିର୍ଣ୍ଣୟ ବାଦ ଜଳ୍ପ ବିତଣ୍ଡା ହେତ୍ୱାଭାସ ଛଳ ଜାତିନିଗ୍ରହସ୍ଥାନାନାଂ ତତ୍ତ୍ୱଜ୍ଞାନାତ୍ ନିଃଶ୍ରେୟସାଧିଗମଃ ।" ଅର୍ଥାତ୍ ନିଃଶ୍ରେୟସ ଲାଭ ସକାଶେ ତତ୍ତ୍ୱଜ୍ଞାନ ଓ ପ୍ରମାଣାଦି ଷୋଡ଼ଶ ପଦାର୍ଥ ଆବଶ୍ୟକ; ପ୍ରମାଣ ଅର୍ଥାତ୍ ଯଥାର୍ଥ ଜ୍ଞାନଲାଭର ଉପାୟ । ଜ୍ଞାନ ଦୁଇ-ପ୍ରକାର -- ଯଥାର୍ଥ ଓ ଅଯଥାର୍ଥ ; ରଜ୍ଜୁ ଓ ଶୁକ୍ତି ପ୍ରଭୃତିରେ ରଜ୍ଜୁ ଓ ଶୁକ୍ତି ପ୍ରଭୃତିର ଯେ ଜ୍ଞାନ, ତାହାର ନାମ ଯଥାର୍ଥ ଜ୍ଞାନ । ରଜ୍ଜୁରେ ସର୍ପ ଓ ଶୁକ୍ତିରେ ରଜତ ବୋଧର ନାମ ଅଯଥାର୍ଥ ଜ୍ଞାନ; ସେଠାରେ ଯଥାର୍ଥ ଜ୍ଞାନ ପ୍ରମାଣ ଓ ଅଯଥାର୍ଥ ଜ୍ଞାନ ପ୍ରମାଣ ନୁହେ । ପ୍ରମାଣ ଚାରି ପ୍ରକାର । ଯଥା :—ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶବ୍ଦ । ଇନ୍ଦ୍ରିୟାର୍ଥ ସନ୍ନିକର୍ଷଜନ୍ୟ ଜ୍ଞାନର ନାମ ପ୍ରତ୍ୟକ୍ଷ । ପ୍ରତ୍ୟକ୍ଷ ଦୁଇ ପ୍ରକାର । ଯଥା:— ନିର୍ବିକଳ୍ପକ ଓ ସବିକଳ୍ପକ । ଯେତେବେଳେ ଘଟପଟ ପ୍ରଭୃତି ପଦାର୍ଥମାନ ସାଧାରଣ ବସ୍ତୁସଂଜ୍ଞା ଲାଭ କରେ, ସେତେବେଳେ ତାହାକୁ ନିର୍ବିକଳ୍ପକ ଜ୍ଞାନ ବୋଲାଯାଏ । ତାହାର ସ୍ୱରୂପ ଯଥା ଘଟ ଘଟତ୍ୱରେ । ଯେତେ-ବେଳେ ଘଟପଟାଦି ପଦାର୍ଥ ଘଟପଟାଦି ନାମ ଧାରଣ କରେ ସେତେବେଳେ ତାହାକୁ ସବିକଳ୍ପ ଜ୍ଞାନ ବୋଲାଯାଏ । ପ୍ରତ୍ୟକ୍ଷ ସମ୍ବନ୍ଧରେ ସୂତ୍ର ଯଥା :— "ଇନ୍ଦ୍ରିୟାର୍ଥ ସନ୍ନିକର୍ଷୋତ୍ପନ୍ନଂ ଜ୍ଞାନମବ୍ୟପଦେଶ୍ୟଂ ଅବ୍ୟଭିଚାରି ବ୍ୟବ-ସାୟାତ୍ମକଂ ପ୍ରତ୍ୟକ୍ଷଂ ।" ଅନୁମାନ ସମ୍ବନ୍ଧରେ ସୂତ୍ର ଯଥା :—"ଅଥ ତତ୍ପୂର୍ବକଂ ତ୍ରିବିଧମନୁମାନଂ ପୂର୍ବବତ୍ ଶେଷବତ ସାମାନ୍ୟତୋ ଦୃଷ୍ଟଂ

ତ ।" ଅର୍ଥାତ୍ ମେଘ ଦର୍ଶନଦ୍ୱାରା ଯାହା କି ବୃଷ୍ଟିର ଅନୁମାନ ହୁଏ, ତାହା ପୂର୍ବବତ୍ ଅନୁମାନ । ଏହି ସ୍ଥଳରେ ପୂର୍ବ ଅର୍ଥ କାରଣ, ଅର୍ଥାତ୍ ପୂର୍ବବତ୍ ଅନୁମାନ । ଏହି ସ୍ଥଳରେ ପୂର୍ବ ଅର୍ଥ କାରଣ, ଅର୍ଥାତ୍ ପୂର୍ବବର୍ତ୍ତୀ କାରଣ ଦର୍ଶନରେ ପରବର୍ତ୍ତୀ ଘଟନାର ଅନୁମାନ । ଶେଷବତ୍ ଅନୁମାନ ଯେପରି କି ନଦୀଜଳ ବୃଦ୍ଧିରେ ପାର୍ବତ୍ୟ ଉଚ୍ଚତମ ପ୍ରଦେଶରେ ବୃଷ୍ଟିର ଅନୁମାନ । ଏଠାରେ ଶେଷ ଅର୍ଥ କାର୍ଯ୍ୟ, ଅର୍ଥାତ୍ ଅତୀତ କାର୍ଯ୍ୟ ଦେଖି କାର୍ଯ୍ୟାନ୍ତରର ଅନୁମାନ । କାରଣ ଓ କାର୍ଯ୍ୟ ଉଭୟ ନାହିଁ ଅଥଚ ଦର୍ଶନାଧୀନ ଯେ ଅନୁମାନ, ତାହାର ନାମ ସାମାନ୍ୟତୋ ଦୃଷ୍ଟାନୁମାନ । ଏଠାରେ ଅବନା ଭାବ ସମ୍ବନ୍ଧ, ଅବନାଭାବର ଅର୍ଥ ସ୍ଥାୟିତ୍ୱ । ଅୟି-ଗୋଲକାଦ ଲୌହପିଣ୍ଡରେ ଧୂମ ନାହିଁ ଓ ଅଗ୍ନି ଅଛି, ଏଠାରେ ଧୂମର ବିନା ଭାବ ଓ ଅଗ୍ନିର ଅବନା ଭାବ ସମ୍ବନ୍ଧ ବୁଝାଯାଏ । ଶବ୍ଦ ପ୍ରମାଣ ସମ୍ବନ୍ଧରେ ସୂତ୍ର ଯଥା :— "ଆପ୍ତୋପଦେଶଃ ଶବ୍ଦଃ" ଅର୍ଥାତ୍ ଭ୍ରମପ୍ରମାଦାଦ ଦୋଷଶୂନ୍ୟ ବାକ୍ୟର ନାମ ଆପ୍ତବାକ୍ୟ, ସେହି ଆପ୍ତବାକ୍ୟ ଶବ୍ଦ । ଯେଉଁଠାରେ ଏକର ସହିତ ଅନ୍ୟର ଉପମା ଦିଆଯାଏ, ତାହାର ନାମ ଉପମାନ । ଉପମାନ ସାଦୃଶ୍ୟ ଜ୍ଞାନ ସାଧନ । ସୂତ୍ର ଯଥା—ପ୍ରସିଦ୍ଧସାଧର୍ମ୍ମ୍ୟାତ୍ ସାଧ୍ୟସାଧନମୁପମାନଂ" ଅର୍ଥାତ୍ ଗବୟରେ ଗୋରୁର ସାଦୃଶ୍ୟ ଓ ମୁଖରେ ଚନ୍ଦ୍ରର ସାଦୃଶ୍ୟ ଇତ୍ୟାଦ ଜ୍ଞାନ ଯାହାଦ୍ୱାରା ଲାଭ ହୁଏ, ତାହାର ନାମ ଉପମାନ । ପ୍ରମେୟ ଦ୍ୱାଦଶ ପ୍ରକାର । ଯଥା—ଆତ୍ମା, ଶରୀର, ଇନ୍ଦ୍ରିୟ, ଅର୍ଥ, ବୁଦ୍ଧି, ମନ, ପ୍ରବୃତ୍ତି, ଦୋଷ, ପ୍ରେତ୍ୟଭାବ, ଫଳ, ଦୁଃଖ ଓ ଅପବର୍ଗ । ଏହି ଦ୍ୱାଦଶ ପ୍ରମେୟ ମଧ୍ୟରେ ଅନେକ ଅବାନ୍ତର ପ୍ରଭେଦ ଅଛି । ଯଥା :— ଇନ୍ଦ୍ରିୟ ପ୍ରମେୟ ମଧ୍ୟରେ ଚକ୍ଷୁ ଓ କର୍ଣ୍ଣ ଇତ୍ୟାଦ । ଦ୍ୱେଷ ପ୍ରମେୟ ମଧ୍ୟରେ ରାଗ ଦ୍ୱେଷ ଇତ୍ୟାଦ । ଈଶ୍ୱର ପ୍ରତିପାଦନ ସକାଶେ ଗୌତମ ସୂତ୍ର ଯଥା :— "ଈଶ୍ୱରଃକାରଣଂ ପୁରୁଷକର୍ମ୍ମଫଳାଦର୍ଶନାତ୍ ।"

ମହାରାଜ ! ଗୌତମ ମହର୍ଷି ମନୁଷ୍ୟକୃତ କର୍ମର ସାଫଲ୍ୟ ଦେଖା-ଯାଉ ନ ଥିବା ପ୍ରଯୁକ୍ତ କେବଳ ଈଶ୍ୱର ଜଗତର କାରଣ ବୋଲି ସ୍ୱୀକାର କରି ପରକ୍ଷଣରେ ମୀମାଂସା କରିଅଛନ୍ତି । ସୂତ୍ର ଯଥା—"ନ ପୁରୁଷକର୍ମା-ଭାବେ ଫଲନିଷ୍ପତ୍ତେଃ ।" ଅର୍ଥାତ୍ ପୁରୁଷ କର୍ମ ଭିନ୍ନ ଫଳ ନିଷ୍ପତ୍ତି ହୁଏ ନାହିଁ, ଏଣୁ ଈଶ୍ୱରାତିରିକ୍ତ ସୃଷ୍ଟିର କାରଣ ସ୍ୱୀକାର କରିବା କର୍ତ୍ତବ୍ୟ । ସେହି କାରଣ ଅଦୃଷ୍ଟ ବା କର୍ମଫଳ । ଗୌତମ ଆତ୍ମାର ଅନାଦିତ୍ୱ ମାନି-ଅଛନ୍ତି । ସୂତ୍ର ଯଥା :—"ପୂର୍ବାଭ୍ୟସ୍ତସ୍ମୃତ୍ୟନୁବନ୍ଧାଜ୍ଜାତସ୍ୟ ହର୍ଷଭୟ-ଶୋକସମ୍ପ୍ରତିପତ୍ତେଃ ।" ଅର୍ଥାତ୍ ସଦ୍ୟୋଜାତ ଶିଶୁର ଯାହା କି ହର୍ଷ ଭୟ ଓ ଶୋକ ପ୍ରତିତ ହୋଇଥାଏ, ତାହାର କାରଣ ପୂର୍ବାଭ୍ୟସ୍ତ ସ୍ମୃତି । ଶିଶୁ ଭୂମିଷ୍ଠ ହେବା ମାତ୍ରକେ ତାହାର ସ୍ତନ୍ୟପାନରେ ପ୍ରବୃତ୍ତି ଜନ୍ମିଥାଏ, କ୍ଷୁଧା ନିବୃତ୍ତିର ଉପାୟ ସ୍ତନ୍ୟ ପାନ ବୋଲି ସଦ୍ୟୋଜାତ ଶିଶୁ କିପରି ବୁଝିଥାଏ ? ଏହି ଜନ୍ମରେ ଶିଶୁ ତ ଆହାରର ଉପଯୋଗିତା ଶିକ୍ଷା କରି ନ ଥାଏ । ଅତଏବ ପୂର୍ବାଭ୍ୟାସ ସ୍ମରଣ ଭିନ୍ନ ଶିଶୁର ଆହାରରେ କିପରି ପ୍ରବୃତ୍ତି ହୋଇ ପାରେ ? ସୁତରାଂ ଆତ୍ମା ନୂତନ ଶରୀର ଗ୍ରହଣ କରିବା ମାତ୍ରକେ ଶରୀର ରକ୍ଷା ନିମିତ୍ତ ଆହାର ପ୍ରୟୋଜନ ବୋଲି ପୂର୍ବାଭ୍ୟସ୍ତ ସ୍ମୃତି ସ୍ମରଣ କରାଇ ଦେଇଥାଏ । ମହାରାଜ! ଏହି ଯୁକ୍ତିବଳରେ ଗୌତମ ପୂର୍ବଜନ୍ମ ସ୍ୱୀକାର କରିଅଛନ୍ତି । ଏହି ସମ୍ବନ୍ଧରେ ନ୍ୟାୟବାର୍ତ୍ତିକରେ ତର୍କ ଉତ୍ଥାପନ ହୋଇଅଛି । ଯଥା :—ପଦ୍ମାଦିଷୁ ପ୍ରବୋଧଃ ସମ୍ମିଲନବତ୍ ତଦ୍‌ବିକାରଃ ।" ଅର୍ଥାତ୍ କମଳ ଯେପରି ଆପେ ଆପେ ପ୍ରସ୍ଫୁଟିତ ହୁଏ, ତାହାର ସେଠାରେ ପୂର୍ବସଂସ୍କାରାଦି ସମ୍ଭବପର ନୁହେ । ସେହିପରି ବାଳକର ହର୍ଷଶୋକଜନିତ ବିକାର ସ୍ୱୀକାର କରାଗଲେ କ୍ଷତି କଣ ?

ଏହି ପ୍ରଶ୍ନର ଉତ୍ତର ଯଥା :—"ଉଷ୍ଣଶୀତବର୍ଷାକାଲ ନିମିତ୍ତତ୍ୱାତ୍ ପଞ୍ଚାତ୍ମକବିକାରାଣାଂ" ଅର୍ଥାତ୍ ଗ୍ରୀଷ୍ମ ବର୍ଷା ଓ ଶୀତ ଆଦି ଋତୁ ପ୍ରଭାବରେ ଏହି ବିକାର ପଞ୍ଚଭୂତାତ୍ମକ ପଦାର୍ଥର ସମ୍ଭବପର । ଯେହେତୁ କାର୍ଯ୍ୟର

କାରଣ ଆବଶ୍ୟକ, ଅର୍ଥାତ୍ ବନାକାବଣରେ କାର୍ଯ୍ୟ ହୋଇ ନ ପାରେ । ଏଠାରେ ପୁନରାୟ ତର୍କ ଉଠେ, ତାହାହିଁ ଯଦ ହୁଏ, ଅୟସ୍କାନ୍ତ ପ୍ରତି ଲୌହ ଆକୃଷ୍ଟ ହେବାର କାରଣ କଣ ? ଏହାର ଉତ୍ତର—ଅୟସ୍କାନ୍ତ ପ୍ରତି ଲୌହ ଯାହା କ ଆକୃଷ୍ଟ ହୁଏ, ସେହି ଆକର୍ଷଣରେ କାଳାକାଳ ନାହିଁ । ସୁତରାଂ ପ୍ରବୃତ୍ତ ନବୃତ୍ତର ପରତସ୍ପ ଜଣା ଯାଏ ନାହିଁ. କନ୍ତୁ କ୍ଷୁଧା ନ ପାଇଲେ ଶିଶୁ କେତେବେଳେ ସ୍ତନ୍ୟ ପାନ କରେ ନାହିଁ । କ୍ଷୁଧା ନବୃତ୍ତି ମାତ୍ରକେ ଶିଶୁ ସ୍ତନ୍ୟପାନରେ ଅନଭିଳାଷ ପ୍ରକାଶ କରଥାଏ । ଅତଏବ ଶିଶୁର ଏହି ପ୍ରବୃତ୍ତି ନବୃତ୍ତି କେଉଁଠାରୁ ଅଇଲା ? ସୁତରାଂ ତାହା ପୂର୍ବ ସ୍ମୃତିର କାର୍ଯ୍ୟ ବୋଲବାକୁ ହେବ । ସୂତ୍ର ଯଥା :—"ପୂର୍ବ-କୃତଫଳାନୁବନ୍ଧା ତଦୁତ୍ପତ୍ତିଃ ।" ଅର୍ଥାତ୍ ପୂର୍ବକୃତ କର୍ମଫଳାନୁସାରେ ଶିଶୁର ରାଗ, ଦ୍ୱେଷ, ଶୋକ ଓ ସ୍ତନ୍ୟପାନ ପ୍ରବୃତ୍ତିରୂପ ବ୍ୟାପାରପରମ୍ପରା ସଂଘଟିତ ହୋଇଥାଏ । ମହାରାଜ ! ନୈୟାୟିକମାନେ ଏହି ଯୁକ୍ତିବଳରେ ପୂର୍ବଜନ୍ମର ସ୍ମୃତି ମୂଳାଧାର ବୋଲି ସ୍ୱୀକାର କରଅଛନ୍ତି । ଯେପରି କ ବର୍ଣ୍ଣମାଳା ଶିକ୍ଷା ସମୟରେ ଶିଶୁମାନେ ନିଜ ନିଜ ପୂର୍ବଦୃଷ୍ଟ ଅକାର ଆକାରାଦର ସହିତ ବର୍ଣ୍ଣମାଳାସମୂହର ସାଦୃଶ୍ୟ ବୁଝିବାର ଚେଷ୍ଟା କରନ୍ତି, ସେହିପରି ଆତ୍ମା ମଧ୍ୟ ପୂର୍ବଦୃଷ୍ଟ ବିଷୟର ସ୍ମୃତିଦ୍ୱାରା ପରଚାଳିତ ହୋଇ-ଥାଏ । ଅତଏବ ମନୁଷ୍ୟ ଏହି ଜୀବନରେ ଶୈଶବର ସ୍ମୃତି ବୟୋବୃଦ୍ଧିର ସହିତ ଯେପରି ଭୁଲିଯାଏ, ପୂର୍ବଜନ୍ମର ଅତୀତ ସ୍ମୃତି ମଧ୍ୟ ଇହଜନ୍ମରେ ସେହିପରି ଭୁଲିଯାଏ । ଶେଷରେ କଛି ମାତ୍ର ସ୍ମୃତି ଜୀବର ମନରେ ଉଦୟ ହୋଇ ପାରେ ନାହିଁ । ଅତ୍ର ମଧ୍ୟ ଯାହା କ ସୁଖୀ ଦୁଃଖୀ ଧନୀ ଦରିଦ୍ର ହେବାକୁ ହୁଏ, ତାହା ପୂର୍ବଜନ୍ମର କର୍ମଫଳ ବା ଅଦୃଷ୍ଟ ଫଳଯୋଗୁଁ ହୋଇଥାଏ । ଯେପରି ବୀଜ ଅନୁସାରେ ଶସ୍ୟ ଉତ୍ପନ୍ନ ହୁଏ, ସେହିପରି ଅଦୃଷ୍ଟ ଅନୁସାରେ ଈଶ୍ୱର ସୁଖ ଦୁଃଖର ବିଧାନ କରଥାନ୍ତି । ନୈୟାୟିକ-ମାନେ ଶରୀରଠାରୁ ଆତ୍ମାର ପାର୍ଥକ୍ୟ ଓ ଶରୀରର ସହିତ ଆତ୍ମାର

ସଂଯୋଗରେ ଅମେ ଶ୍ରେଷ୍ଠ ଓ ଅମେ ବଡ଼ ଇତ୍ୟାଦ ଅନୁଭବ ସ୍ୱୀକାର କରନ୍ତି । ଆଉ ମଧ ଶରୀରଠାରୁ ଆତ୍ମାର ପାର୍ଥକ୍ୟ ଜ୍ଞାନରେ ଆତ୍ୟନ୍ତିକ ଦୁଃଖ ନିବୃତ୍ତି ବା ନିଃଶ୍ରେୟସ ଲାଭ ହେଉଥିବାର ସ୍ୱୀକାର କରନ୍ତି ।

ଗୌତମ ବେଦ ସମ୍ବନ୍ଧରେ ବୋଲିଅଛନ୍ତି । ଯଥା :—"ତଦ-ପ୍ରାମାଣ୍ୟମନୃତବ୍ୟାଘାତପୁନରୁକ୍ତଦୋଷେଭ୍ୟଃ ।" ଅର୍ଥାତ୍ ବେଦରେ ମିଥ୍ୟାବାଦ ବ୍ୟାଘାତ ଓ ପୁନରୁକ୍ତ ଦୋଷ ଅଛି ଏଣୁ ବେଦବାକ୍ୟ ପ୍ରମାଣ ନୁହେ ଅର୍ଥାତ୍ ମିଥ୍ୟା ।

ମହାରାଜ ! ଈଶ୍ୱର ସମ୍ବନ୍ଧରେ ଶ୍ରୁତି ବାକ୍ୟର ଅନୈକ୍ୟ ଦେଖା-ଯାଏ । ଅର୍ଥାତ୍ "ଏକମେବାଦ୍ୱିତୀୟଂ ବ୍ରହ୍ମ" ଏହି ଶ୍ରୁତିରେ ଅଦ୍ୱୈତବାଦ ଓ "ଦ୍ୱେ ବ୍ରହ୍ମଣୀ ବେଦିତବ୍ୟେ ପରଞ୍ଚାପରମେବ ଚ" ଏହି ଶ୍ରୁତିରେ ଦ୍ୱୈତବାଦ ଦେଖାଯାଏ । ଏଣୁ ବେଦବାକ୍ୟ ମିଥ୍ୟା । ଆଉ ମଧ କେଉଁ-ଠାରେ ଉଦୟକାଳରେ ହୋମ ପ୍ରଶସ୍ତ କେଉଁଠାରେ ଅନୁଦୟ କାଳରେ ହୋମ ପ୍ରଶସ୍ତ ବୋଲି ବେଦରେ ଦେଖାଯାଏ । ଅର୍ଥାତ୍ ଏକକାଳ ପ୍ରସଙ୍ଗରେ ଅନ୍ୟ କାଳର ନିନ୍ଦାବାଦ ସୂଚିତ ହେଉଅଛି । ସୁତରାଂ ପଦେ ପଦେ ବ୍ୟାଘାତ । ବେଦରେ ଏକ କଥା ପୁନଃ ପୁନଃ ଉକ୍ତ ହୋଇଅଛି, ଏଣୁ ପୁନରୁକ୍ତି । ଅତଏବ ଏହି ତ୍ରିବିଧ ଦୋଷ ହେତୁ ବେଦବାକ୍ୟ ଅପ୍ରମାଣ, ଏହି ଆଶଙ୍କା ଉତ୍ଥାପନ କରି ତାହା ସ୍ୱୟଂ ସୂତ୍ରଦ୍ୱାରା ଖଣ୍ଡନ କରିଅଛନ୍ତି । ଯଥା:— "କର୍ମକର୍ତ୍ତୃ ସାଧନବୈଗୁଣ୍ୟାତ୍" ଅର୍ଥାତ୍ କର୍ମକର୍ତ୍ତା ଅନଧିକାରୀ, ମନ୍ତ୍ରର ଉଚ୍ଚାରଣ ଦୋଷ ଓ ବିଧିବର୍ଜିତ କର୍ମାନୁଷ୍ଠାନ ଏହି ତ୍ରିବିଧ ଦୋଷ ଅଭୀଷ୍ଟ ଫଳର ଅନ୍ତରାୟସାଧକ । ଯାହାହେଉ ଉପଯୁକ୍ତ କର୍ମ ଓ କର୍ମକାରର ଦୋଷରେ ଫଳ ଲାଭ ପ୍ରତି ନୈରାଶ୍ୟଭାବ ଜନ୍ମଥାଏ । ବସ୍ତୁତଃ ବେଦବାକ୍ୟ ମିଥ୍ୟା ନୁହେ । ଶ୍ରୁତିରେ ଯାହାଙ୍କ କେଉଁଠାରେ ବ୍ରହ୍ମ ଏକ ବୋଲି ଅଦ୍ୱୈତବାଦ ଓ କେଉଁ ଶ୍ରୁତିରେ ଦୁଇ ବ୍ରହ୍ମ ବୋଲି ଦ୍ୱୈତବାଦ ଉଲ୍ଲେଖ ହୋଇଅଛି, ତାହା ଜୀବର

ଜ୍ଞାନବୈଗୁଣ୍ୟ ଅର୍ଥାତ୍ ଜୀବର ଯେତେବେଳେ ଅଜ୍ଞାନାବସ୍ଥା, ତେତେବେଳେ ଜୀବ ଆତ୍ମା ଓ ପରମାତ୍ମାର ଅଭେଦ ଭାବ ବୁଝି ପାରେ ନାହିଁ ଯେତେବେଳେ ଆପଣାଙ୍କୁ ଓ ବ୍ରହ୍ମଙ୍କୁ ଦୁଇ ବୋଲି ମନେ କରି ଥାଏ । ଯେତେବେଳେ କି ଜୀବର ତତ୍ତ୍ୱଜ୍ଞାନ ଉଦୟ ହୁଏ, ସେତେବେଳେ ସେହି ଜୀବ ସର୍ବତ୍ର ବ୍ରହ୍ମକର୍ତ୍ତୃତ୍ୱ ବୁଝିଥାଏ । ସୁତରାଂ ଅବସ୍ଥାବିଶେଷରେ ଦ୍ୱୈତାଦ୍ୱୈତ ପ୍ରସଙ୍ଗ ଘଟୁଥାଏ । ହୋମ ପକ୍ଷରେ ଉଦୟ ଓ ଅନୁଦୟ ଉଭୟ କାଳହିଁ ପ୍ରଶସ୍ତ ଥାଏ । ଏକକାଳରେ ସଙ୍କଳ୍ପ କରି ଅନ୍ୟ କାଳରେ ହୋମ କଲେ ଅଭୀଷ୍ଟ ଫଳ ପ୍ରତି ବିଘ୍ନ ଘଟୁଥାଏ । ବେଦରେ ପ୍ରୟୋଜନ ବୁଝାଯିବା ସକାଶେ ଯାହା କି ପୁନଃ ପୁନଃ ଉଚ୍ଚାରଣ ହୋଇଥାଏ, ତାହା ପୁନରୁକ୍ତି ମଧ୍ୟରେ ଗଣ୍ୟ ନୁହେ, ଏଣୁ ବେଦବାକ୍ୟ ପ୍ରମାଣ ।

ରାଜା—ମହାଭାଗ ! ଏହି ଶାସ୍ତ୍ରର ନାମ ନ୍ୟାୟ ରଖାଯିବାର କୌଣସି କାରଣ ଅଛି କି ?

ସାଧୁ—ମହାରାଜ ! ଯେଉଁ କାରଣରେ ନାମ ହୋଇ ପାରେ କି ? ଅର୍ଥାତ୍ "ନ୍ୟାୟୋନାମ ପଞ୍ଚାବୟବବାକ୍ୟଂ" ଅର୍ଥାତ୍ ନ୍ୟାୟାଂଶ ପାଞ୍ଚ ଅବୟବରେ ବିଭକ୍ତ । ଯଥାः—ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ । ପ୍ରଥମେ ପ୍ରତିଜ୍ଞା ଉତ୍ଥାପନ କରାଯାଏ । ତାହା ପରେ ହେତୁ ନିର୍ଦ୍ଦିଷ୍ଟ ହୁଏ । ଏପରି ଉଦାହରଣଦ୍ୱାରା ସେହି ହେତୁର କାରଣ ଦୃଢ଼ୀଭୂତ କରାଯାଏ । ଏହିପରି ହେତୁ ନିର୍ଦ୍ଦିଷ୍ଟ ହେଲେ କାର୍ଯ୍ୟସ୍ଥଳରେ ତାହାର ଉପନୟ ଅର୍ଥାତ୍ ପ୍ରୟୋଗ ହୁଏ । ଅବଶେଷରେ ନିଗମନ ଅର୍ଥାତ୍ ତାହା ସିଦ୍ଧାନ୍ତ କରାଯାଏ । ଦୃଷ୍ଟାନ୍ତ ପ୍ରତିଜ୍ଞାः— "ପର୍ବତୋ ବହ୍ନିମାନ୍" ଅର୍ଥାତ୍ ପର୍ବତରେ ଅଗ୍ନି ଅଛି । ହେତୁ— "ପର୍ବତୋ ବହ୍ନିମାନ୍ ଧୂମାତ୍" ଯେହେତୁ ପର୍ବତରୁ ଧୂମ ନିର୍ଗତ ହୋଇଅଛି । ଅନ୍ୱୟୀ ଓ ବ୍ୟତିରେକୀ ଭେଦରେ ଉଦାହରଣ ଦୁଇ ପ୍ରକାର । ଯଥା—ଅନ୍ୱୟୀ ବିଦ୍ୟମାନତା ଓ ବ୍ୟତିରେକୀ ଅବିଦ୍ୟମାନତା ।

ଉଦାହରଣ—ଯୋ ଯୋ ଧୂମବାନ୍ ସ ସ ବହ୍ନିମାନ୍ । ଅର୍ଥାତ୍ ଯେଉଁ ଯେଉଁ ସ୍ଥାନରୁ ଧୂମ ନିର୍ଗତ ହୁଏ, ସେହି ସେହି ସ୍ଥାନରେ ଅଗ୍ନିର ଅସ୍ତିତ୍ୱ ଅଛି । ଯଥା ପାକଶାଳା ବା ମହାନସ, ଅର୍ଥାତ୍ ପାକଶାଳାରୁ ଧୂମ ବାହାରୁ-ଅଛି ଓ ସେଠାରେ ଅଗ୍ନି ଅଛି । "ଯନ୍ନୈବଂ ତନ୍ନୈବଂ" ଅର୍ଥାତ୍ ଯେଉଁଠାରେ ବହ୍ନି ନାହିଁ, ସେଠାରେ ଧୂମ ନାହିଁ । ଯଥା ଜଳାଶୟ, ଅର୍ଥାତ୍ ଜଳାଶୟରେ ବହ୍ନି ନାହିଁ ଓ ଧୂମ ନାହିଁ । ଏଠାରେ ପାକଶାଳା ଅନ୍ୱୟୀ ଉଦାହରଣ ସ୍ଥଳ ଓ ଜଳାଶୟ ବ୍ୟତିରେକୀ ଉଦାହରଣ ସ୍ଥଳ । ଅନନ୍ତର ଉପନୟ ପ୍ରମାଣ ପ୍ରୟୋଗରେ ବୁଝାଗଲା ଯେ, ଅଗ୍ନିରୁ ଧୂମ ନିର୍ଗତ ହୋଇଥାଏ । ଅତଃପର ନିଗମନ ଅର୍ଥାତ୍ ସଂଶୟଶୂନ୍ୟବୃତ୍ତି ବା ସିଦ୍ଧାନ୍ତ । "ପର୍ବତୋ ବହ୍ନିମାନ୍" ନିଶ୍ଚୟ ପର୍ବତରେ ବହ୍ନି ଅଛି, ଏହିପରି ସିଦ୍ଧାନ୍ତ କରାଯାଏ । ପୂର୍ବାବୟବଚତୁଷ୍ଟୟରେ ଜଣାଗଲା ଯେ, ଯହିଁରୁ ଧୂମ ନିର୍ଗତ ହୁଏ, ତହିଁରେ ଅଗ୍ନି ଥାଏ । ସୁତରାଂ ପର୍ବତରୁ ଯେତେବେଳେ କି ଧୂମ ନିର୍ଗତ ହେଉଅଛି, ସେତେବେଳେ ପର୍ବତରେ ନିଶ୍ଚୟ ଅଗ୍ନି ଅଛି, ଏହିପରି ସିଦ୍ଧାନ୍ତର ନାମ ନିଗମନ ।

ମହାରାଜ ! ଏହିପରି କୌଣସି ପଦାର୍ଥକୁ ମୂଳସ୍ୱରୂପ ଗ୍ରହଣ କରି ପଞ୍ଚାବୟବ କଳ୍ପନାପୂର୍ବକ ତାହାର ଯେ ବିଚାର ପଦ୍ଧତି ସଂକ୍ଷେପତଃ ତାହାର ନାମ ନ୍ୟାୟଶାସ୍ତ୍ର । ଏଠାରେ ଆପଣ ବୁଝିବା ସକାଶେ ଗୋଟିଏ ସ୍ୱତନ୍ତ୍ର ଉଦାହରଣ ଦିଆଗଲା । ଯଥା— ମନେ କରିବା ହେଉ, କେହି ବୋଇଲା କୃଷ୍ଣ ମୃତ୍ୟୁର ଅଧୀନ, ସେହି କଥାରେ ତର୍କ ଉଠିଲା । ତେତେବେଳେ ମୃତ୍ୟୁର ଅଧୀନ ଏହି ବାକ୍ୟଟିକୁ ପ୍ରତିଜ୍ଞାରୂପରେ ଗ୍ରହଣ କରି ତାହାର ହେତୁ ଦେଖାଇବାର ଚେଷ୍ଟା ଚଳିଲା । ହେତୁ ହେଲା କୃଷ୍ଣ ଏକଜଣ ମନୁଷ୍ୟ, ତେତେବେଳେ କି ହେତୁ ଏହିପରି ହେତୁ ନିର୍ଦ୍ଦେଶ କରାଯାଏ । ତାହା ଉଦାହରଣ ପ୍ରଦର୍ଶନ ଆବଶ୍ୟକ ପଡ଼ିଲା । ପୂର୍ବେ ବୋଲା ଯାଇଅଛି, ଅନ୍ୱୟୀ ଓ ବ୍ୟତିରେକୀ ଦୁଇ ପ୍ରକାର

ଉଦାହରଣରେ ଦେଖାଇ ଦିଆଯାଏ । ଅନ୍ୱୟୀ ସ୍ଥଳରେ ବୋଲି ହେଲା, ଯେ ମନୁଷ୍ୟ ସେ ମୃତ୍ୟୁର ଅଧୀନ । ବ୍ୟତିରେକୀ ସ୍ଥଳରେ ବୋଲାଗଲା, ଯେ ଜ ମୃତ୍ୟୁର ଅଧୀନ ନୁହେ, ସେ ମଧ୍ୟ ମନୁଷ୍ୟ ନୁହେ । ଅନ୍ୱୟୀ ଓ ବ୍ୟତିରେକୀ ଏହି ଦୁଇ ଉଦାହରଣଦ୍ୱାରା ଉପନୟ ବା ଯଣସ୍ତ ନଗସନ ହେଲା । ଯେ ଜ ମୃତ୍ୟୁର ଅଧୀନ, ସେ ମଧ୍ୟ ମନୁଷ୍ୟ । ସୁତରାଂ କୃଷ୍ଣ ଏ ଜଣେ ମନୁଷ୍ୟ । କାର୍ଯ୍ୟରେ ନଗମନ ବା ସଦ୍ଧାନ୍ତରେ ଉପନୀତ ହେଲା, ମନୁଷ୍ୟମାନେ ମୃତ୍ୟୁର ଅଧୀନ, ଅତଏବ କୃଷ୍ଣ ଏକଜଣ ମନୁଷ୍ୟ, ସେ ମଧ୍ୟ ମୃତ୍ୟୁର ଅଧୀନ ।

ଇତି ନ୍ୟାୟଦର୍ଶନବିସ୍ତୃତନାମକ ପଞ୍ଚମ ପରିଚ୍ଛେଦ ସମାପ୍ତ ।

## ଷଷ୍ଠ ପରିଚ୍ଛେଦ ।



### ବୌଦ୍ଧ-ଦର୍ଶନ ବିସ୍ତୃତ ।

ରାଜା—ମହାଭାଗ ! ଆପଣ ନ୍ୟାୟ ଦର୍ଶନର ବିଷୟ ଆଉ କିଛି ନ ବୋଲି ବୌଦ୍ଧ ଦର୍ଶନରୁ କିଛି ସାର ସାର ବିଷୟ ଶୁଣାଇ ଚରିତାର୍ଥ କରିବା ହେଉନ୍ତୁ ।

ସାଧୁ—ମହାରାଜ ! ବୌଦ୍ଧ ଦାର୍ଶନିକମାନେ ଜଗତର ଦୁଇଟି ମୂଳତତ୍ତ୍ୱ ସ୍ୱୀକାର କରନ୍ତି । ଯଥା—ଭୂତଂ ଚିତ୍ତଂ ଭୂତଂ ଭୌତିକଂ । ଚିତ୍ତଂ ଚୈତ୍ତଂ ଚ । ସେମାନେ ଭୂତହେତୁକ ଜଗଦାଦି ଭୌତିକ ପଦାର୍ଥର ଓ ଚିତ୍ତହେତୁକ ରୂପବିଜ୍ଞାନାଦି ପଞ୍ଚସ୍କନ୍ଧାତ୍ମକ ଚୈତ୍ତ ପଦାର୍ଥର ଉତ୍ପତ୍ତି ହୋଇଥିବାର ସ୍ୱୀକାର କରନ୍ତି । ବୌଦ୍ଧ ଦାର୍ଶନିକମାନେ ପୃଥିବୀ,

ଜଳ, ତେଜ ଓ ବାୟୁ ଏହି ଚତୁର୍ବିଧ ଭୂତଠାରୁ ପରିଦୃଶ୍ୟମାନ ଜଗତର ସୃଷ୍ଟି ହୋଇଥିବାର ସ୍ୱୀକାର କରନ୍ତି । ପୃଥିବ୍ୟାଦି ପରମାଣୁରେ ସଂହତକ୍ରମେ ସ୍ଥୂଳ ସୃଷ୍ଟି ହୋଇଥିବାର କଳ୍ପନା କରନ୍ତି ଏବଂ ପୃଥିବ୍ୟାଦି ଚତୁର୍ବିଧ ଭୂତର ଖର ସ୍ନେହ ,ଉଷ୍ଣ ଈରଣ ଅର୍ଥାତ୍ ଗତିଶୀଳ ଏହି ଗୁଣ ପ୍ରକାର ସ୍ୱଭାବ ପ୍ରକାଶ କରନ୍ତି । ସେମାନେ ଆକର୍ଷଣ ବିକର୍ଷଣ ଓ ଧର୍ମବତ୍ ପ୍ରଭୃତି ଧାତୁଚତୁଷ୍ଟୟର ସ୍ୱଭାବାନ୍ତର୍ଗତ ବୋଲି ସ୍ଥିର କରିଅଛନ୍ତି । ଅତଏବ ସ୍ୱଭାବବଶରେ ସଂଯୋଗ ବିଯୋଗରେ ସ୍ଥୂଳ ଜଗତର ସୃଷ୍ଟି ସ୍ୱୀକାର କରନ୍ତି । ଚୈତନ୍ୟପଦାର୍ଥ ମଧ୍ୟରେ ରୂପବିଜ୍ଞାନ ବେଦନାସଂଜ୍ଞାସଂସ୍କାର-ସଞ୍ଜ୍ଞକାଃ ପଞ୍ଚସ୍କନ୍ଧାସ୍ତି ଭିତ୍ତୈଚୈତାତ୍ମକାଃ । ଅର୍ଥାତ୍ ରୂପ ବିଜ୍ଞାନ ବେଦନା ସଂଜ୍ଞା ଓ ସଂସ୍କାର ଏହି ପାଞ୍ଚଟି ଅବୟବ । ବୌଦ୍ଧମତରେ ଇନ୍ଦ୍ରିୟସହିତ ବିଷୟର ସମ୍ବନ୍ଧରୂପ ସ୍କନ୍ଧ ; ସୁଖଦୁଃଖାଦିର ଅନୁଭବ ବେଦନା ସ୍କନ୍ଧ । ଅହମ୍ ଅସ୍ମି ଇତ୍ୟାଦି ଅହଂଭାବ ବିଜ୍ଞାନସ୍କନ୍ଧ । ଏହି ମନୁଷ୍ୟ ଓ ଏହି ପଶୁ ଇତ୍ୟାଦି ଭେଦଭାବ ସଞ୍ଜ୍ଞାସ୍କନ୍ଧ । ରାଗଦ୍ୱେଷାଦି ଭାବ ସଂସ୍କାରସ୍କନ୍ଧ । ଏହି ସଂସ୍କାର ଅବିଦ୍ୟାର ମୂଳ ବୋଲି ନିର୍ଦ୍ଦିଷ୍ଟ କରିଅଛନ୍ତି । ସେମାନେ କ୍ଷଣସ୍ଥାୟୀ ପଦାର୍ଥର ସ୍ଥାୟିତ୍ୱ କଳ୍ପନାକୁ ଅବିଦ୍ୟା ବୋଲି କହନ୍ତି । ସେହି ଅବିଦ୍ୟା ହେତୁ ରାଗ, ଦ୍ୱେଷ, ଧର୍ମ ଓ ଅଧର୍ମ ପ୍ରଭୃତି ଚକ୍ରବତ୍ର ଆବର୍ତ୍ତିତ ହୁଏ । ବୌଦ୍ଧମାନେ ଈଶ୍ୱର ସୃଷ୍ଟିକର୍ତ୍ତା ବୋଲି ସ୍ୱୀକାର ନ କରି ସୃଷ୍ଟି ସ୍ୱଭାବର କ୍ରିୟା ଥାଇ ଅନାଦିକାଳ ସମଭାବରେ ଚଳି ଆସୁଥିବାର ସ୍ୱୀକାର କରନ୍ତି । ଜୀବ କର୍ମଦ୍ୱାରା ସଂସାରକୁ ଆଗମନ କରି କର୍ମଫଳ ଭୋଗିବାକୁ ବାଧ୍ୟ ହୁଏ । ଜୀବ ପ୍ରଜ୍ଞାଲାଭରେ କର୍ମବନ୍ଧନ ଛିନ୍ନ କରି ନିର୍ବାଣ ପ୍ରାପ୍ତ ହୋଇଥାଏ । ଜୀବର କରୁଣା, ଚିତ୍ତସ୍ଥୈର୍ଯ୍ୟ, ଗୌରବତ୍ୟାଗ, ଶମ, ଦମ, ଶାନ୍ତି, ଓ ଉତ୍ସାହାଦିଦ୍ୱାରା ପ୍ରଜ୍ଞାଲାଭ ହୁଏ । ବୌଦ୍ଧମତରେ ସମସ୍ତ ପଦାର୍ଥ କ୍ଷଣିକ, ଦୁଃଖମୟ, ବିସଦୃଶ ଓ ଅଳୀକ ; ଯଥା—"ସର୍ବଂ କ୍ଷଣିକଂ କ୍ଷଣିକଂ ଦୁଃଖଂ ଦୁଃଖଂ ସ୍ୱଲକ୍ଷଣଂ ସ୍ୱଲକ୍ଷଣଂ

ଶୂନ୍ୟଂ ଶୂନ୍ୟଂ ।" ମହାରାଜ ! ଏବମ୍ବିଧ ଭାବନା, ଏବମ୍ବିଧ ଅଭ୍ୟାସ ଓ ଏବମ୍ବିଧ ଭାବନାର ଉତ୍କର୍ଷ ପ୍ରଭୃତି ନିର୍ବାଣ ହେତୁ ବୋଲି ବୌଦ୍ଧ ଦାର୍ଶନିକମାନେ ସ୍ୱୀକାର କରନ୍ତି । ଯେଉଁମାନେ କରୁଣାଦି ଗୁଣରେ ବିଭୂଷିତ ହୋଇ ଏବମ୍ବିଧ ନିଶରନ୍ତର ଧାରଣା କରି ପାରନ୍ତି, ସେହିମାନେ ନିର୍ବାଣ ଲାଭର ଅଧିକାରୀ ଅଟନ୍ତି । ବୌଦ୍ଧମାନେ ଚାରି ଶ୍ରେଣୀରେ ବିଭକ୍ତ । ଯଥା—ମାଧ୍ୟମିକ, ଯୋଗାଚାର, ସୌତ୍ରାନ୍ତିକ ଓ ବୈଭାଷିକ । ମାଧ୍ୟମିକ ଶୂନ୍ୟବାଦୀ ଅର୍ଥାତ୍ ସମସ୍ତ ଶୂନ୍ୟ, ସୃଷ୍ଟି ପୂର୍ବେ ଆଦ୍ୟନ୍ତହୀନ କେବଳ ଶୂନ୍ୟ ଥିଲା । ମାଧ୍ୟମିକ ମତରେ ଶୂନ୍ୟ ଅବଲମ୍ବନ କରି ବିଶ୍ୱର ସୃଷ୍ଟି ଓ ଶୂନ୍ୟରେ ଲୟ ହୁଏ । ଯୋଗାଚାରମାନେ ବାହ୍ୟଶୂନ୍ୟତ୍ୱବାଦୀ ଅର୍ଥାତ୍ ସେମାନେ ବାହ୍ୟବିଷୟରେ କୌଣସିପ୍ରକାର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ଯୋଗାଚାରମତରେ ଜ୍ଞାନ ମାତ୍ର ପ୍ରତ୍ୟକ୍ଷ ଅର୍ଥାତ୍ ଜ୍ଞାନଦ୍ୱାରା ସମସ୍ତ ପଦାର୍ଥର ଶୂନ୍ୟତ୍ୱ ପ୍ରତିପନ୍ନ ହୁଏ । ନୀଳ ଓ ପୀତ ପ୍ରଭୃତିର କ୍ଷଣିକତ୍ୱ ବିଜ୍ଞାନ ସାହାଯ୍ୟରେ ନିର୍ଣ୍ଣୀତ ହୋଇଥାଏ । ଅତଏବ ବିଜ୍ଞାନ ଭିନ୍ନ ଆଉ ସମସ୍ତ ଅସତ୍ୟ । ସୌତ୍ରାନ୍ତିକମାନେ ବାହ୍ୟାର୍ଥର ମେୟତ୍ୱ ସ୍ୱୀକାର କରନ୍ତି । ଅର୍ଥାତ୍ ଜ୍ଞାନ ପ୍ରତ୍ୟକ୍ଷ ଅନୁମେୟ ବୋଲି ସ୍ୱୀକାର କରନ୍ତି । ଅତଏବ ଜ୍ଞାନ ଅନ୍ତାଂଶରେ ଅନୁଭୂତ ହୁଏ ଓ ବାହ୍ୟବସ୍ତୁ ବହିରଂଶରେ ଅନୁଭାବ୍ୟ ସୁତରାଂ ବିଜ୍ଞାନର ସତ୍ୟରେ ବାହ୍ୟବସ୍ତୁର ସତ୍ୟତା । ବୈଭାଷିକମାନେ ବାହ୍ୟାର୍ଥର ପ୍ରତ୍ୟକ୍ଷତ୍ୱ ସ୍ୱୀକାର କରନ୍ତି । ଅନ୍ତାଂଶରେ ଅବସ୍ଥିତ ବୋଲି ଜ୍ଞାନ ଯଦି ପ୍ରତ୍ୟକ୍ଷ ହୁଏ, ତେବେ ଜ୍ଞାନାନୁଭୂତ ବାହ୍ୟବସ୍ତୁ ପ୍ରତ୍ୟକ୍ଷପର୍ଯ୍ୟାୟଭୁକ୍ତ ନ ହେବ କାହିଁକି, ଏହି ଯୁକ୍ତି ଦେଖାଇଅଛନ୍ତି । ଯାହା ହେଉ ସେମାନଙ୍କର ପଦାର୍ଥର କ୍ଷଣିକତ୍ୱ ସମ୍ବନ୍ଧରେ ମତଭେଦ ନାହିଁ । ମହାରାଜ ! ଯେପରି ବାୟୁଚାଳିତ ମେଘଖଣ୍ଡ ଓ ଦୀପଶିଖା ପ୍ରଭୃତି କ୍ଷଣିକ ଓ ଅସତ୍, ବୌଦ୍ଧମତରେ ସେହିପରି ପୃଥିବୀ କ୍ଷଣିକ ଓ ଅସତ୍ ।

ରାଜା ଜନାର୍ଦ୍ଦନ:—ମହାଭାଗ ! ବୌଦ୍ଧଦାର୍ଶନିକମାନେ କର୍ମଫଳ, ପୁନର୍ଜନ୍ମ ଓ ନିର୍ବାଣ ପ୍ରଭୃତି ସ୍ୱୀକାର କରୁଥିବା ସ୍ଥଳରେ ସେମାନଙ୍କର ଅଦ୍ୱୈତ ମତ ସହିତ ପାର୍ଥକ୍ୟ ଲକ୍ଷିତ ହେଉଅଛି କି ?

ସାଧୁ :—ମହାରାଜ ! ଅଦ୍ୱୈତମତରେ ମାୟା ଉପାଧି ବିନିର୍ମୁକ୍ତ ଜୀବର ମୁକ୍ତି; ବୌଦ୍ଧମତରେ ଭୌତିକ ପଦାର୍ଥ ଭୌତିକ ପଦାର୍ଥରେ ବିଲୀନ ହେଲେ ନିର୍ବାଣ; ଏହି ମାତ୍ର ମୁକ୍ତିସମ୍ବନ୍ଧରେ ପାର୍ଥକ୍ୟ ଦେଖାଯାଏ । "ଆତ୍ମେତ୍ୟୁପଗଚ୍ଛନ୍ତି ଗ୍ରାହୟନ୍ତି ଚ ମୁକ୍ତଃ ପ୍ରତିଜ୍ଞାନାତ୍ ଆତ୍ମପ୍ରକରଣାତ୍ ଅବିଭାଗେନ ଦୃଷ୍ଟତ୍ୱାତ୍" ଇତ୍ୟାଦି ଶ୍ରୁତିବଳରେ ଅଦ୍ୱୈତମତରେ ବ୍ରହ୍ମଙ୍କୁ ଆତ୍ମବୁଦ୍ଧିରେ ଉପାସନା କରାଯାଏ । ସୁତରାଂ ଅଦ୍ୱୈତମାନେ ଆତ୍ମଜ୍ଞାନ ମୋକ୍ଷଲାଭର ଉପାୟ ବୋଲି ସ୍ୱୀକାର କରନ୍ତି । ଏହି ସ୍ଥଳରେ ବୌଦ୍ଧମାନେ ତର୍କ କରନ୍ତି, ଯଦି ସମସ୍ତ ପଦାର୍ଥ ବ୍ରହ୍ମ, ତେବେ ପୁତ୍ର ଓ କନ୍ୟା ପ୍ରଭୃତି ଯେଉଁ ଭାବରେ ଆଲିଙ୍ଗନ କରାଯାଏ, ସେହି ଭାବରେ ଅଗ୍ନି ଓ ସର୍ପ ପ୍ରଭୃତି ଆଲିଙ୍ଗନ କରି ଯାଇ ପାରିବ କି ? ଆଉ ମଧ୍ୟ ସମସ୍ତ ଏକ ଭାବରେ ସେବ୍ୟ ଓ ସେବକର ଇତରବିଶେଷ କିଛି ହେଲେ ରହି ପାରିବ କି ?

ଇତି ବୌଦ୍ଧଦର୍ଶନବିସ୍ତାରନାମକ ଷଷ୍ଠ ପରିଚ୍ଛେଦ ସମାପ୍ତ ।

## ସପ୍ତମ ପରିଚ୍ଛେଦ ।



### ଚାର୍ବାକ ଦର୍ଶନ ବିଚାର ।

ରାଜା ମହାଭାଗ ! ଆଉ ବୌଦ୍ଧଦର୍ଶନରୁ ବିଶେଷ କିଛି ନ ବୋଲି ଚାର୍ବାକ ଦର୍ଶନରୁ କିଛି ସାର ସାର ବିଷୟ ଶୁଣାଇ ଚରିତାର୍ଥ କରିବା ହେଉନ୍ତୁ ।

ସାଧୁ--- ମହାରାଜ ! ଚାର୍ବାକମାନେ ଆତ୍ମାକୁ ଦେହରୁ ପୃଥକ୍ ବୋଲି ସ୍ୱୀକାର କର ନାହାନ୍ତି । ଅର୍ଥାତ୍ ଦେହ କେବଳ ଆତ୍ମା ବୋଲି ସ୍ୱୀକାର କରନ୍ତି । ଚାର୍ବାକମାନେ ଦେହ ଧ୍ୱଂସରେ ଆତ୍ମାର ଧ୍ୱଂସ ଓ ସୁଖଭୋଗ କେବଳ ପୁରୁଷାର୍ଥ ବୋଲି କହନ୍ତି । ଆଉ ମଧ୍ୟ ପ୍ରତ୍ୟକ୍ଷ ଭିନ୍ନ ପ୍ରମାଣାନ୍ତର ସ୍ୱୀକାର କରନ୍ତି ନାହିଁ । ସେମାନେ ପୃଥିବୀ, ଜଳ, ତେଜ ଓ ବାୟୁ ଏହି ଚାରି ଭୂତରେ ସମସ୍ତ ସୃଷ୍ଟି ହୋଇଥିବାର ମାନନ୍ତି । ଏପରି ଚୈତନ୍ୟ ପୂର୍ବୋକ୍ତ ଭୂତରୁ ଉତ୍ପନ୍ନ ବୋଲି ସ୍ୱୀକାର କରନ୍ତି ।

ଚାର୍ବାକମାନଙ୍କ ମତରେ ପରଲୋକ ବା ପୁନର୍ଜନ୍ମ ନାହିଁ । କେବଳ ମରଣରୁ ମୁକ୍ତି ଅର୍ଥାତ୍ ମୃତ୍ୟୁର ନାମ ଅପବର୍ଗ । ସେମାନଙ୍କ ମତରେ ପରକାଳ ମିଥ୍ୟା, ସୁତରାଂ ଇହକାଳର ସୁଖଭୋଗ କେବଳ ପୁରୁଷାର୍ଥ । ସେମାନଙ୍କର ସାର ସିଦ୍ଧାନ୍ତ ଏହି ଯେ, ଗୁଡ଼ ଓ ତଣ୍ଡୁଳର ସଂଯୋଗରେ ଯେପରି ମାଦକଦ୍ରବ୍ୟର ଉତ୍ପତ୍ତି ହୁଏ, ସେହିପରି ପୃଥିବ୍ୟାଦି ଭୂତ-ଚତୁଷ୍ଟୟର ସଂଯୋଗରେ ଚୈତନ୍ୟର ଉତ୍ପତ୍ତି ହୋଇଥାଏ । ସେହି ମତରେ ପୃଥିବ୍ୟାଦି ଭୂତନାଶରେ ଦେହନାଶ ହୁଏ । ଦେହ ନାଶ ହେଲେ ପୁନରୁତ୍ପତ୍ତିର ସମ୍ଭାବନା ନ ଥାଏ । ଦେହ ଧାରଣରେ ଚୈତନ୍ୟ ଲାଭ କରି ଆମ୍ଭେ ସ୍ଥୂଳ, ଆମ୍ଭେ କୃଶ ଓ ଆମୃଠାରୁ ଆତ୍ମା ଭିନ୍ନ ଇତ୍ୟାଦି ଲୌକିକ କଳ୍ପନା ହୋଇଥାଏ । ସେମାନେ ବୋଲନ୍ତି, ଦେହ ନାଶ ହେଲେ ସମସ୍ତ ଶେଷ ହୋଇଥାଏ, ଯଦି କଷ୍ଟ କରାଯାଇ ପାରେ, ଇହଜନ୍ମ ସୁଖଭୋଗ ପୁରୁଷାର୍ଥ ଲାଭ ଓ ସ୍ୱର୍ଗ ଲାଭ । ସେମାନଙ୍କର ଉପଦେଶ ଯଥା: —

"ଯାବଜ୍ଜୀବେତ୍ ସୁଖଂ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ୍ ।
ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ॥"

ମହାରାଜ ! ଚାର୍ବାକମାନେ ସ୍ୱର୍ଗଗମନ ନରକଗମନ ଓ ପରକାଳ ଆଦି ସ୍ୱୀକାର କରନ୍ତି ନାହିଁ । ଆଉ ମଧ୍ୟ ସେମାନେ ତର୍କ କରନ୍ତି, ଯାଗ-

ଯଜ୍ଞାଦିରେ ନିହତ ପଶୁ ଯଦି ସ୍ୱର୍ଗକୁ ଗମନ କରେ, ତେବେ ବନ୍ଧୁମାନଙ୍କୁ ଆଗରେ ନିହତ କରି ସ୍ୱର୍ଗକୁ ପଠାଇ ଦେବା ଉଚିତ ନୁହେଁ କି ? ଅତଏବ ସେମାନଙ୍କର ସାର ସିଦ୍ଧାନ୍ତ ଏହା :—"କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋऽର୍ଥନିର୍ଣ୍ଣୟଃ" ମହାରାଜ ! ଚାର୍ବାକମାନେ ଶାସ୍ତ୍ର ଅପେକ୍ଷା ଯୁକ୍ତି ଶ୍ରେଷ୍ଠ ବୋଲି ସ୍ୱୀକାର କରନ୍ତି । ଦେବଗୁରୁ ବୃହସ୍ପତି ଅସୁରମାନଙ୍କ ବିନାଶକାମନାରେ ସେମାନଙ୍କ ବୁଦ୍ଧିବିକୃତି ଘଟାଇବା ନିମନ୍ତେ ଏହି ଚାର୍ବାକ ଦର୍ଶନ ପ୍ରଚାର କରିଥିବାର କିମ୍ବଦନ୍ତୀ ଅଛି । ଏହି ମତାବଲମ୍ବୀ ହେଲେ ଲୋକର ଅଧଃପତନ ଅବଶ୍ୟମ୍ଭାବୀ ।

ରାଜା—ମହାଭାଗ ! ଚାର୍ବାକମାନେ ଯଦିବା ଦେହକୁ ଚୈତନ୍ୟ ବୋଲି ସ୍ୱୀକାର କରନ୍ତି, ତେବେ ମଲା ମନୁଷ୍ୟର ଦେହ ତ ପୂର୍ବ ପ୍ରାୟ ଅକ୍ଷୁଣ୍ଣ ଥାଏ, ମୃତ୍ୟୁ ପରେ ହସ୍ତପଦାଦି ଚଳିବାରେ ଯୁକ୍ତି ଦେଇଅଛନ୍ତି କି ?

ସାଧୁ—ମହାରାଜ ! ଏହି ଯୁକ୍ତି ବଳରେ ତାର୍କିକମାନେ "ଶରୀରସ୍ୟ ନ ଚୈତନ୍ୟଂ ମୃତେଷୁ ବ୍ୟଭିଚାରତଃ" ଇତ୍ୟାଦି ବାକ୍ୟଦ୍ୱାରା ଶରୀରାତିରିକ୍ତ ଆତ୍ମା ଚୈତନ୍ୟ ବୋଲି ସ୍ୱୀକାର କରିଅଛନ୍ତି । ଯାହାହେଉ ଚାର୍ବାକମାନେ ଚତୁର୍ବିଧ ଭୂତରୁ ସୃଷ୍ଟି ସ୍ୱୀକାର କରିଥିବା ସ୍ଥଳରେ ମୃତ ବ୍ୟକ୍ତିର ପ୍ରାଣବାୟୁର ଅଭାବ ହେତୁ ଚୈତନ୍ୟର ଅଭାବ ବୋଲି ସିଦ୍ଧାନ୍ତ କରିଅଛନ୍ତି ।

ରାଜା—ମହାଭାଗ ! ଏହି ଦର୍ଶନ ଅନୁଯାୟୀ କାର୍ଯ୍ୟ କଲେ ଲୋକର ଅଧଃପତନ ହେବାର ଆପଣ ବୋଲିଥିବା ସ୍ଥଳରେ ମୋର ଆଉ ବିଶେଷ ସେହି ଦର୍ଶନ ଶୁଣିବାର ଇଚ୍ଛା ନାହିଁ । ଆପଣ କିଛି ମୀମାଂସାର ବିଷୟ କହିବା ହେଉନ୍ତୁ ।

**ଇତି ଚାର୍ବାକଦର୍ଶନନାମକ ସପ୍ତମ ପରିଚ୍ଛେଦ ସମାପ୍ତ ।**



# ଅଷ୍ଟମ ପରିଚ୍ଛେଦ ।



## ମୀମାଂସାଦର୍ଶନ ବିବୃତି ।

ସାଧୁ—ମହାରାଜ ! ମୀମାଂସକମାନେ ବେଦ ଦୁଇ ଅଂଶରେ ବିଭକ୍ତ ହୋଇଥିବାର ସ୍ୱୀକାର କରନ୍ତି । ଯଥା :—କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । ସେହି ବେଦର କର୍ମକାଣ୍ଡ ଅବଲମ୍ବନ କରି ମୀମାଂସାର ସୃଷ୍ଟି ଓ ଜ୍ଞାନକାଣ୍ଡ ଅବଲମ୍ବନ କରି ବେଦାନ୍ତର ସୃଷ୍ଟି ହୋଇଅଛି ।

ମୀମାଂସକମାନେ ବେଦର ନିତ୍ୟତ୍ୱ ସ୍ୱୀକାର କରି କହନ୍ତି ଯେ, ବେଦ ଅପୌରୁଷେୟ ଓ ଅଭ୍ରାନ୍ତ; ତାହା ଚିରଦିନ ରହିଅଛି ଓ ରହିବ । ସୁତରାଂ ବେଦ ସ୍ୱତଃସିଦ୍ଧ । ବେଦର କର୍ମକାଣ୍ଡହିଁ ସର୍ବସ୍ୱ । ଅର୍ଥାତ୍ କର୍ମକାଣ୍ଡରେ ପ୍ରବୃତ୍ତି ଜନ୍ମାଇବା ନିମିତ୍ତ ବେଦର ସୃଷ୍ଟି ହୋଇଅଛି । ମୀମାଂସକମାନେ ବିଧି ନିଷେଧ ମନ୍ତ୍ର ନାମଧେୟ ଓ ଅର୍ଥବାଦ ଏହି ପାଞ୍ଚୋଟି ଅଙ୍ଗରେ ବେଦକୁ ବିଭକ୍ତ କରିଅଛନ୍ତି । ବେଦର ଯେଉଁ ବାକ୍ୟଦ୍ୱାରା ମନୁଷ୍ୟର କର୍ତ୍ତବ୍ୟ ନିର୍ଦ୍ଦିଷ୍ଟ ହୋଇଅଛି, ତାହାର ନାମ ବିଧି । ଯେପରି କି ସ୍ୱର୍ଗଲାଭ ସକାଶେ ଯାଗ କରିବାର କର୍ତ୍ତବ୍ୟ ନିର୍ଦ୍ଦିଷ୍ଟ ହୋଇଅଛି, ଏହାର ନାମ ବିଧି । ଦିବାଭାଗରେ ନିଦ୍ରା କରିବ ନାହିଁ, ଏହାର ନାମ ନିଷେଧ । ସେହି ବିଧି ଉତ୍ପତ୍ତି ପ୍ରୟୋଗ ବିନିଯୋଗ ଓ ଅଧିକାରଭେଦରେ ଚତୁର୍ବିଧପ୍ରକାର ନିର୍ଦ୍ଦିଷ୍ଟ ହୋଇଅଛି । କେଉଁ ଯାଗ କରାଯିବ, କରାଯିବା ଯାଗ କାହା ଉଦ୍ଦେଶ୍ୟରେ ବା କି ଦ୍ରବ୍ୟରେ ସାଧିତ ହେବ, ଯଜ୍ଞାନୁଷ୍ଠାନରେ କି କି ଅଙ୍ଗର ପ୍ରୟୋଜନ, କେଉଁ ଯାଗ କାହାର ଅନୁଷ୍ଠାନରେ ବିଧିତରୁଷ୍ଟିଯୁକ୍ତରେ ତାହାର ନିର୍ଦ୍ଦେଶ କରାଯାଏ । ମନ୍ତ୍ରଦ୍ୱାରା ବିଧିର ବିବୃତି ହୋଇଥାଏ । ଯଥା ମନ୍ତ୍ରର ଅର୍ଥ, ଦେବତାର ଆବାହନ, ବିଧିର କ୍ରମଭଙ୍ଗ ଓ

ଉଚ୍ଚାରଣ ଦୋଷ ପ୍ରଭୃତି ଅନିଷ୍ଟ ଫଳର ଅନୁଗମସାଧକ । ଯେଉଁ ଉଦ୍ଦେଶ୍ୟରେ ଯେଉଁ ଯଜ୍ଞର ଅନୁଷ୍ଠାନ ହୁଏ, ତାହା ସେହି ଯଜ୍ଞର ନାମଧେୟ । ଅର୍ଥବାଦଦ୍ୱାରା ବିଧି ଓ ନିଷେଧର ପ୍ରଶଂସା ଓ ନିନ୍ଦାବାଦ ସୂଚିତ ହୋଇଥାଏ । ଅର୍ଥବାଦ ତିନିପ୍ରକାର । ଯଥା— ଗୁଣବାଦ, ଅନୁବାଦ ଓ ଭୂତାର୍ଥବାଦ ।

ମହାରାଜ ! ବେଦରେ କି କି ବିଷୟ ଅଛି, ସେମାନଙ୍କର କି ପ୍ରକାରେ ପ୍ରାଧାନ୍ୟ, ଏହି କେବଳ ମୀମାଂସାଶାସ୍ତ୍ରର ପ୍ରତିପାଦ୍ୟ । ସୂତ୍ର ଯଥା "ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାତ୍ ଅନର୍ଥକାମତଦର୍ଥାନାଂ ।" ଅର୍ଥାତ୍ କର୍ମ କେବଳ ବେଦର ସାର, ବେଦରେ କର୍ମ ଭିନ୍ନ ଆଉ ଯାହା କିଛି ଅଂଶ ଦୃଷ୍ଟ ହୁଏ, ତାହା ଅନର୍ଥକ । ମୀମାଂସକମାନେ କେବଳ ମନ୍ତ୍ରକୁ ଦେବତା ବୋଲି ସ୍ୱୀକାର କରନ୍ତି । ମାତ୍ର ମନ୍ତ୍ର ଭିନ୍ନ ଅନ୍ୟ ଦେବତାଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ମୀମାଂସକମାନେ ବୋଲନ୍ତି, ଦେବତା କେବେ ମାତ୍ର, ଶରୀରୀ ନୁହନ୍ତି । ଶରୀରୀ ହେଲେ ଭିନ୍ନ ଭିନ୍ନ ସ୍ଥାନରେ ଦେବତାର ଅବସ୍ଥାନ ଅସମ୍ଭବ ।

ମହାରାଜ ! ଏହି ଜୈମିନିଙ୍କ ମତରେ ଯଜ୍ଞାଦି କର୍ମ ମୋକ୍ଷ ଫଳପ୍ରଦ । ଯଜ୍ଞର କ୍ରିୟାପଦ୍ଧତି ଓ ମନ୍ତ୍ରୋଚ୍ଚାରଣାଦି ବିଶୁଦ୍ଧ ଭାବରେ କରା ନ ଗଲେ ଅନିଷ୍ଟଜନକରେ ବିଘ୍ନ ଘଟିଥାଏ, ଏହି କେବଳ ଜୈମିନିଙ୍କ ମୀମାଂସା । କେହି କେହି ଏହି ଦର୍ଶନକୁ ଈଶ୍ୱରଙ୍କ ନାମ ନ ଥିବା ହେତୁ ନାସ୍ତିକ୍ୟ-ବାଦ କହନ୍ତି, ମାତ୍ର ଜୈମିନିଙ୍କ ପକ୍ଷାବଲମ୍ବୀମାନେ "ବ୍ରହ୍ମପ୍ରୀତଚେତ୍" ଏହି ସୂତ୍ରରେ ବ୍ରହ୍ମର ଅସ୍ତିତ୍ୱ ସ୍ୱୀକାର କରନ୍ତି । ଜୈମିନିଙ୍କ ମତରେ ବେଦ ଈଶ୍ୱରପ୍ରଣୀତ ନୁହେ ବା ବେଦର କେହି କର୍ତ୍ତା ନାହାନ୍ତି, କିନ୍ତୁ ଶବ୍ଦର ନିତ୍ୟତ୍ୱ ଓ ଏକତ୍ୱ ହେତୁ ବେଦ ନିତ୍ୟ । ଶବ୍ଦର ନିତ୍ୟତ୍ୱରେ ସୂତ୍ର ପ୍ରମାଣ ଯଥା:—ନିତ୍ୟସ୍ତୁସ୍ୟାତ୍ ଦର୍ଶନସ୍ୟ ପରାର୍ଥତ୍ୱାତ୍ । ୧ । ସର୍ବତ୍ର ଯୌଗ-ପଦ୍ୟାତ୍ । ୨ । ସଙ୍ଖ୍ୟାଭାବାତ୍ । ୩ । ଅନପେକ୍ଷତ୍ୱାତ୍ । ୪ । ଲିଙ୍ଗଦର୍ଶନାଚ୍ଚ

। ୫ । ଅର୍ଥାତ୍ ଉଚ୍ଚାରଣ ମାତ୍ର ଶବ୍ଦର ଅର୍ଥ ପରଗୃହୀତ ହୁଏ, ଶବ୍ଦର ବିନାଶ ନାହିଁ, ଏହି ହେତୁ ଶବ୍ଦ ନିତ୍ୟ । ସବୁଠାରେ ସବୁବେଳେ ଏକ ଶବ୍ଦର ଏକମାତ୍ର ଅର୍ଥ ଗୃହୀତ ହୋଇଥାଏ, ଏଣୁ ଶବ୍ଦ ନିତ୍ୟ ଓ ଏକ । ଶବ୍ଦର କ୍ଷୟ ଓ ବୃଦ୍ଧି ନାହିଁ, ଯେହେତୁ ଏକମାତ୍ର ଶବ୍ଦ ପୁନଃ ପୁନଃ ଉଚ୍ଚାରିତ ହେଲେ ମଧ୍ୟ ତଦ୍ଦ୍ୱାରା ଶବ୍ଦୋଚ୍ଚାରିତ ବସ୍ତୁର ସଂଖ୍ୟା ବୃଦ୍ଧି ହୁଏ ନାହିଁ । ଅନ୍ୟ ମଧ୍ୟ ଶବ୍ଦ ବିନଷ୍ଟ ହେବାର କୌଣସି ହେତୁ ଦେଖାଯାଏ ନାହିଁ । ଏହିହେତୁ ଜୈମିନିଙ୍କ ମତରେ ସେହି ନିତ୍ୟ ଅପୌରୁଷେୟ ଶବ୍ଦ କେବଳ ବେଦ । ସେହି ବେଦବିହିତ କର୍ମାନୁଷ୍ଠାନ ମୋକ୍ଷଲାଭର ଏକମାତ୍ର ଉପାୟ ।

ମହାରାଜ ! ଜୈମିନିଙ୍କ ବିପକ୍ଷବାଦୀ ନୈୟାୟିକ ଶବ୍ଦର ନିତ୍ୟତ୍ୱ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କର ଦୃଷ୍ଟାନ୍ତ ସୂତ୍ର ଯଥା କର୍ମ ଏକେ ତତ୍ର ଦର୍ଶନାତ୍ । ୧ । ଅସ୍ଥାନାତ୍ । ୨ । କରୋତି ଶବ୍ଦାତ୍ । ୩ । ସତ୍ତ୍ୱାନ୍ତରଯୌଗପଦ୍ୟାତ୍ । ୪ । ପ୍ରକୃତିବିକୃତେଶ୍ଚ । ୫ । ବୃଦ୍ଧିଶ୍ଚ କର୍ତ୍ତୃଭୂମ୍ନାସ୍ୟ । ୬ । ଅର୍ଥାତ୍ ଶବ୍ଦ ସବୁକାଳରେ ଉଚ୍ଚାରିତ ହୁଏ, ସୁତରାଂ ତାହାର ବିଦ୍ୟମାନତା ବା ନିତ୍ୟତ୍ୱ ନାହିଁ । ଶବ୍ଦ ଉତ୍ପତ୍ତି ମାତ୍ର ନଷ୍ଟ ହୁଏ ଓ ଅସ୍ଥାୟୀ, ଏଣୁ ଶବ୍ଦର ନିତ୍ୟତ୍ୱ ଅସମ୍ଭବ । ଶବ୍ଦ କରାଯାଏ, ଏଣୁ ଶବ୍ଦର ସୃଷ୍ଟିକର୍ତ୍ତା ବିଦ୍ୟମାନ ଥାଏ । ଶବ୍ଦ ଏକ କାଳରେ ବହୁ ବ୍ୟକ୍ତିର କର୍ଣ୍ଣଗୋଚର ହୁଏ, ସୁତରାଂ ବହୁତ୍ୱ ହେତୁ ଶବ୍ଦର ନିତ୍ୟତ୍ୱ ଓ ଏକତ୍ୱ ଅସମ୍ଭବ । ପ୍ରକୃତିପ୍ରତ୍ୟୟ ହେତୁ ଶବ୍ଦର ବିକୃତ ଓ ରୂପାନ୍ତର ଘଟିଥାଏ । ସୁତରାଂ ଶବ୍ଦ ନିତ୍ୟ ହୋଇ ନ ପାରେ । ଏକମାତ୍ର ଶବ୍ଦ ଏକାଧିକ ବ୍ୟକ୍ତି ଉଚ୍ଚାରଣ କଲେ ଏକାଧିକ ବାର ଶବ୍ଦ ଉଚ୍ଚାରିତ ହୁଏ । ଶବ୍ଦ-କର୍ତ୍ତାର ସଂଖ୍ୟାର ହ୍ରାସ ଓ ବୃଦ୍ଧି ହେତୁ ଶବ୍ଦର ହ୍ରାସ ଓ ବୃଦ୍ଧି ହୋଇଥାଏ, ଅତଏବ ଶବ୍ଦ ନିତ୍ୟ ହୋଇ ନ ପାରେ । ମହାରାଜ ! ନୈୟାୟିକମାନେ ଏହି ପୂର୍ବୋକ୍ତ ଯୁକ୍ତିବଳରେ ଶବ୍ଦର ନିତ୍ୟତ୍ୱ ଖଣ୍ଡନ

କରିଅଛନ୍ତି । ସେହି ବିଷୟରେ ଜୈମିନିଙ୍କ ଉତ୍ତର ସୂତ୍ର ଯଥା—ନିତ୍ୟସ୍ତୁ ସ୍ୟାଦ୍ଦର୍ଶନସ୍ୟ ପରାର୍ଥତ୍ୱାତ୍ । ୧ । ସର୍ବତ୍ର ଯୌଗପଦ୍ୟାତ୍ । ୨ । ସଂଖ୍ୟାଭାବାତ୍ । ୩ । ଅନପେକ୍ଷତ୍ୱାତ୍ । ୪ । ପ୍ରଖ୍ୟାଭାବାଚ୍ଚ ଯୋଗସ୍ୟ । ୫ । ଲିଙ୍ଗଦର୍ଶନାଚ୍ଚ । ୬ । ଅର୍ଥାତ୍ ଶବ୍ଦ ସମ୍ବନ୍ଧରେ ଯେଉଁ ଶବ୍ଦରେ ଯେ ଜ୍ଞାନ, ସେ ଜ୍ଞାନ ଚିରକାଳ ଥାଏ । ସୁତରାଂ ଶବ୍ଦ ନିତ୍ୟ, ଅନିତ୍ୟ ନୁହେ । ଶବ୍ଦ କହେ, ଏହାଦ୍ୱାରା ଶବ୍ଦର ଉଚ୍ଚାରଣ ମାତ୍ର, କିନ୍ତୁ ନିର୍ମାଣ ନୁହେ । ସୂର୍ଯ୍ୟ ଯେପରି ସର୍ବତ୍ର ଦୃଶ୍ୟମାନ, ସେହିପରି ଶବ୍ଦ ଏକ ହୋଇ ବହୁ ବ୍ୟକ୍ତିଙ୍କ ଶ୍ରାବ୍ୟ ହୋଇଥାଏ । ଏକ ଶବ୍ଦର ବହୁ ବାର ଉଚ୍ଚାରଣ ହେଲେ ଧ୍ୱନିର ବୃଦ୍ଧି, କିନ୍ତୁ ଶବ୍ଦର ବୃଦ୍ଧି ନୁହେ । ସୁତରାଂ ଶବ୍ଦର ନିତ୍ୟତ୍ୱ ସ୍ୱତଃ ପ୍ରମାଣସିଦ୍ଧ ।

ରାଜା—ମହାତ୍ମନ ! ଏହି ଦର୍ଶନର ନାମ ମୀମାଂସା ହୋଇଥିବାର କୌଣସି କାରଣ ଅଛି କି ?

ସାଧୁ—ମହାରାଜ ! ଏହି ଦର୍ଶନରେ ବେଦର ମୀମାଂସା ହୋଇଅଛି, ଆଉ ମଧ୍ୟ ଏହି ଦର୍ଶନ ଶ୍ରୁତି ଓ ସ୍ମୃତିର ବିରୋଧଭଞ୍ଜକ, ଏଣୁ ଏହାର ନାମ ମୀମାଂସାଦର୍ଶନ । ଏହି ଦର୍ଶନ ମହର୍ଷି ଜୈମିନିଙ୍କଦ୍ୱାରା ପ୍ରଣୀତ ହୋଇଥିବାରୁ ଏହାର ଅପର ନାମ ଜୈମିନିଦର୍ଶନ । ମୀମାଂସକ-ମାନେ ଶବ୍ଦର ନିତ୍ୟତା ହେତୁ ବେଦର ନିତ୍ୟତ୍ୱ ସ୍ୱୀକାର କରନ୍ତି । ଏଥିରେ ନୈୟାୟିକର ଅପର ସଙ୍କେତାତ୍ମକ ଶବ୍ଦ ଓ ଅର୍ଥର ସମ୍ବନ୍ଧ ହେତୁ ବେଦବାକ୍ୟ ଅପ୍ରମାଣ ହେଉ, ଏହି ଯୁକ୍ତି ଖଣ୍ଡନ ପକାରେ ଜୈମିନିଙ୍କ ସୂତ୍ର ଯଥା:—"ଔତ୍ପତ୍ତିକସ୍ତୁ ଶବ୍ଦସ୍ୟ ଅର୍ଥେନ ସହ ସମ୍ବନ୍ଧସ୍ତସ୍ୟ ଜ୍ଞାନମୁପଦେଶଃ ଅବ୍ୟତିରେକଶ୍ଚ ଅର୍ଥେ ଅନୁପଲବ୍ଧେ ତତ୍ ପ୍ରମାଣଂ ବାଦରାୟଣସ୍ୟ ।" ୧।୧।୫। ଅସ୍ୟାର୍ଥଃ—ଶବ୍ଦସ୍ୟ ନିତ୍ୟବେଦଘଟକପଦସ୍ୟ ଅଗ୍ନିହୋତ୍ରଂ ଜୁହୁୟାତ୍ ସ୍ୱର୍ଗକାମ ଇତ୍ୟାଦେରର୍ଥେନ ସମ୍ବନ୍ଧଃ ଔତ୍ପତ୍ତିକଃ ସ୍ୱାଭାବିକଃ ନିତ୍ୟ ଇତି ଯାବତ୍ ତସ୍ୟ ଧର୍ମସ୍ୟ ଇତି ଶେଷଃ । ଜ୍ଞପ୍ତେର୍ଯଥାର୍ଥ-

ଜ୍ଞାନସ୍ୟ କରଣଂ ଉପଦେଶଃ ଅର୍ଥପ୍ରତିପାଦକଂ ଅବ୍ୟତିରେକ ଅବ୍ୟଭିଚରିଣୀ ଦୃଶ୍ୟତେ । ଅନୁପଲବ୍ଧେ ପ୍ରତ୍ୟକ୍ଷାଦପ୍ରମାଣୈରଜ୍ଞାତେ ଅର୍ଥେ ତତ୍ ପ୍ରମାଣଂ ବାଦରାୟଣସ୍ୟାନପେକ୍ଷତ୍ୱାତ୍ ଧର୍ମେ ପ୍ରମାଣଂ ବାଦରାୟଣାଚାର୍ଯ୍ୟସ୍ୟ ସମ୍ମତମିତି- ଭାଷ୍ୟଂ । ଏହାର ଅଭିପ୍ରାୟ ଏହି ଯେ, ଶବ୍ଦ ଓ ଅର୍ଥର ପରସ୍ପର ସମ୍ବନ୍ଧ, ଅର୍ଥାତ୍ ବୋଧବୋଧକ ଭାବ ସ୍ୱାଭାବିକ ଓ ନିତ୍ୟ; ଏହି ହେତୁ ବେଦବାକ୍ୟ ଧର୍ମଜ୍ଞାନ ବିଷୟରେ ଓ ପ୍ରତ୍ୟକ୍ଷାଦିପ୍ରମାଣନିରପେକ୍ଷ ଅଜ୍ଞାତ ଅଭ୍ରାନ୍ତ ଉପଦେଶ ପ୍ରଦାନ କରିବା ହେତୁ ବେଦ ସ୍ୱତଃପ୍ରମାଣ ଓ ନିତ୍ୟ ବୋଲି ମୀମାଂସକମାନେ ସ୍ୱୀକାର କରନ୍ତି ।

ରାଜା— ମହାଭାଗ ! ଯଦି ବା ବେଦ ନିତ୍ୟ, ତେବେ ଈଶ୍ୱର ଓ ବେଦର ପାର୍ଥକ୍ୟ କଣ ବୋଲିଯିବ ?

ସାଧୁ—ମହାରାଜ ! ଯେଉଁ ମୀମାଂସକମାନେ ବେଦ ନିତ୍ୟ ବୋଲି ସ୍ୱୀକାର କରନ୍ତି, ସେମାନଙ୍କ ମତରେ ବେଦ କେବଳ ଈଶ୍ୱର ଅର୍ଥାତ୍ ଈଶ୍ୱର ବେଦରୁ ଭିନ୍ନ ନୁହନ୍ତି । ଯାହାହେଉ କଣାଦଙ୍କ ମତରେ "ତଦ୍‌ବଚନାଦାମ୍ନାୟସ୍ୟ ପ୍ରାମାଣ୍ୟଂ" ଅର୍ଥାତ୍ ବେଦ ଈଶ୍ୱରବାକ୍ୟ ବୋଲି ପ୍ରମାଣ । ଆଉ ମଧ ଲେଖିଅଛନ୍ତି, "ବୁଦ୍ଧିପୂର୍ବା ବାକ୍ୟକୃତିର୍ବେଦେ" ଅର୍ଥାତ୍ ବେଦବକ୍ତାର ଯଥାର୍ଥ ଜ୍ଞାନପୂର୍ବକ ବାକ୍ୟ ରଚନା ଦେଖାଯାଏ । ସୁତରାଂ ବେଦ ସର୍ବଜ୍ଞ ଈଶ୍ୱରପ୍ରଣୀତ ବୋଲି ଉଲ୍ଲେଖ ହୋଇଅଛି । ଯାହାହେଉ ଏପର୍ଯ୍ୟନ୍ତ ଦର୍ଶନ, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ ପ୍ରଭୃତିରେ ବେଦର ଆଦି ନିର୍ଣ୍ଣୟ ହୋଇ ପାରି ନାହିଁ । କେବଳ ଶତପଥ ବ୍ରାହ୍ମଣରେ ବେଦର ସୃଷ୍ଟିକର୍ତ୍ତା ପ୍ରଜାପତି ବ୍ରହ୍ମା ବୋଲି ଉଲ୍ଲେଖ ହୋଇଅଛି । ଯଥା—

"ବ୍ରହ୍ମ ଏବ ପ୍ରଥମମସୃଜତ ତ୍ରୟୀମେବ ବିଦ୍ୟାଂ ।" ୬।୧।୧।୧୦ ଆଉ ମଧ ତୈତିରୀୟ ବ୍ରାହ୍ମଣରେ ଉକ୍ତ ହୋଇଅଛି – "ତମନୁ ହ୍ୟେ ବେଦା ଅସୃଜ୍ୟନ୍ତ" ବେଦ ବିଷୟରେ ଛାନ୍ଦୋଗ୍ୟ ଉପନିଷଦ୍ "ଅଗ୍ନେରୃଚଃ

ବାଦରାୟଣଙ୍କଂକି ସାମ ଅବଦଧ୍ୟାତ୍" "ତେ ବେଦା ଈଶ୍ୱରନିଶ୍ୱାସସମ୍ଭୂତା" ଏହି ପ୍ରମାଣାଦିରୁ ପ୍ରମାଣିତ ହେଉଅଛି ଯେ, ବେଦ ସ୍ୱୟମ୍ଭୂ ବ୍ରହ୍ମାଙ୍କଠାରୁ ନିଶ୍ୱାସର ନ୍ୟାୟ ସ୍ୱୟଂ ଉତ୍ପନ୍ନ । ଏଣୁ ବେଦ ସ୍ୱତଃପ୍ରମାଣ, ବେଦର ପ୍ରମାଣାନ୍ତର ଆବଶ୍ୟକ କରେ ନାହିଁ । ସାଙ୍ଖ୍ୟକାର ବୋଲନ୍ତି, ବେଦ ପୌରୁଷେୟ ନୁହେ ଓ ଅପୌରୁଷେୟ ନୁହେ । କିନ୍ତୁ ବେଦ ବୀଜାଙ୍କୁରବତ୍, ଅର୍ଥାତ୍ ଯେପରି କି ବୀଜ ଅଙ୍କୁରର କାରଣ ଓ ଅଙ୍କୁର ବୀଜର କାରଣ ହୋଇଥାଏ, ବେଦ ମଧ୍ୟ ସେହିରୂପ । ଅତଏବ ବେଦର ଆଦି ନିର୍ଣ୍ଣୟ ହେବା ଅସମ୍ଭବ ।

ସ୍ମୃତି ବେଦର ଅନୁସାରୀ ବୋଲି ସ୍ମୃତିର ନାମ ଧର୍ମଶାସ୍ତ୍ର । ମନୁ ସ୍ମୃତି ସମ୍ୟକ୍‌ରୂପେ ବେଦ ଅନୁସରଣ କରିଥିବା ହେତୁ ପ୍ରଧାନ ଧର୍ମଶାସ୍ତ୍ର ରୂପେ ଗଣ୍ୟ ହୋଇଅଛି । ଅତଏବ ବୃହସ୍ପତି ଘୋଷଣା କରିଅଛନ୍ତି—

"ବେଦାର୍ଥୋପନିବଦ୍ଧତ୍ୱାତ୍ ପ୍ରାଧାନ୍ୟଂ ହି ମନୋଃ ସ୍ମୃତଂ ।
ମନ୍ୱର୍ଥବିପରୀତା ତୁ ଯା ସ୍ମୃତିଃ ସା ନ ଶସ୍ୟତେ ॥"

ମହାରାଜ ! ସମସ୍ତ ଶାସ୍ତ୍ରକାର ବୋଲିଅଛନ୍ତି, ବେଦ ଅନାଦି କାଳରୁ ରହିଅଛି, ମାତ୍ର ଏ ପର୍ଯ୍ୟନ୍ତ ବେଦର କାଳ ନିର୍ଣ୍ଣୟ ହୋଇ ପାରି ନାହିଁ । ବେଦ ସମ୍ବନ୍ଧରେ ଶାସ୍ତ୍ରକାରମାନେ ନାନାଦି ବିତର୍କ ବିସ୍ତର କରି ଯାଇଅଛନ୍ତି । କିନ୍ତୁ କେହି କୃତକାର୍ଯ୍ୟ ହୋଇ ପାରି ନାହାନ୍ତି ।

ରାଜା—ମହାଭାଗ ! ଯେପରି କି ଲୋକେ କୋଟିଜନ୍ମ ଚେଷ୍ଟାରେ ଈଶ୍ୱରତତ୍ତ୍ୱ ବୁଝିବାରେ ବିଫଳମନୋରଥ ହୁଅନ୍ତି, ଫଳରେ ବେଦ ଶାସ୍ତ୍ର ସାର ଓ ଆଦି ନିର୍ଣ୍ଣୟ ସେହିରୂପ ଦୁରୂହ, ଯାହାହେଉ ଆପଣ ମୀମାଂସା ବା ବେଦ ସମ୍ବନ୍ଧରେ ଆଉ ଅଧିକ କିଛି ନ ବୋଲି ଯୋଗ ସମ୍ବନ୍ଧରେ ବୋଇଲେ ଅନୁଗୃହୀତ ହେବି ।

ଇତି ମୀମାଂସାଦର୍ଶନବିସ୍ତୃତିନାମକ ଅଷ୍ଟମ ପରିଚ୍ଛେଦ ସମାପ୍ତ



# ନବମ ପରିଚ୍ଛେଦ ।



## ପାତଞ୍ଜଲ ଦର୍ଶନ ବିଷୟ ।

ସାଧୁ—ମହାରାଜ ! ପତଞ୍ଜଳ ମହର୍ଷି ଏପରି ଦୃଶ୍ୟମାନ ଜଗତକୁ ଦୁଃଖନିଦାନ ମନେ କରି ଦୁଃଖନିବୃତ୍ତି ସକାଶେ ଯେଉଁ ଉପଯୁକ୍ତ ନିର୍ଦ୍ଦେଶ କରିଅଛନ୍ତି, ତାହା ପାତଞ୍ଜଲ ଦର୍ଶନ ନାମରେ ଅଭିହିତ ହୋଇଅଛି । ପାତଞ୍ଜଳ ଦାର୍ଶନିକ ସାଙ୍ଖ୍ୟ ଦାର୍ଶନିକର ନ୍ୟାୟ ପ୍ରକୃତି ଓ ପୁରୁଷର ଭେଦ ଜ୍ଞାନ ଲାଭ ହେବା ସକାଶେ ଯୋଗର ଆବଶ୍ୟକତା ସ୍ୱୀକାର କରନ୍ତି । ଅର୍ଥାତ୍ ସେମାନେ ବୋଲନ୍ତି, ଯୋଗ ଭିନ୍ନ ତତ୍ତ୍ୱଜ୍ଞାନ ଲାଭ ହେବା ସହଜ ନୁହେ । ସୁତରାଂ ଯୋଗ କୈବଲ୍ୟ ବା ମୋକ୍ଷ ଲାଭର ପ୍ରଧାନ ଉପାୟ । ଯେପରି କି ପଦାର୍ଥତତ୍ତ୍ୱ ନିରୂପଣ ସମ୍ବନ୍ଧରେ ସାଙ୍ଖ୍ୟ ଦାର୍ଶନିକ ପଞ୍ଚବିଂଶତି ତତ୍ତ୍ୱ ଓ ତହିଁରୁ ଅତିରିକ୍ତ ପୁରୁଷ ବା ଈଶ୍ୱର ସ୍ୱୀକାର କରନ୍ତି । ଯେଉଁ ପୁରୁଷ କି ଅବିଦ୍ୟାମୂଳକ କ୍ଲେଶ, କର୍ମ, ବିପାକ ଓ ଆଶୟର ସହିତ ସମ୍ବନ୍ଧଶୂନ୍ୟ, ସେହି ପୁରୁଷ ଜ୍ଞାନବାନ୍ ଓ ବ୍ରହ୍ମାଦି ପର୍ଯ୍ୟନ୍ତର ଗୁରୁ । ପାତଞ୍ଜଲ ମତରେ ସାଧାରଣ ପୁରୁଷ ରାଗଦ୍ୱେଷାଦି କ୍ଲେଶର, ପାପ ପୁଣ୍ୟ କର୍ମର ଓ ଜନ୍ମାୟୁ ଭୋଗ କର୍ମଫଳର ଏବଂ ପୂର୍ବଜନ୍ମ ସଂସ୍କାରର ଅଧୀନ । ବିଶେଷ ପୁରୁଷ ବା ଈଶ୍ୱର ସେ ସମସ୍ତର ଅତୀତ । ସେହି ପୁରୁଷ ତ୍ରିକାଳାତୀତ ନିର୍ଲିପ୍ତ ଅର୍ଥାତ୍ ସମ୍ବନ୍ଧଶୂନ୍ୟ ସର୍ବଜ୍ଞ ଓ ଅନନ୍ତ । ତାହାଙ୍କଠାରେ ଜ୍ଞାନର ପରାକାଷ୍ଠା, ସେପରି ପରାକାଷ୍ଠା ଯୋଗପ୍ରଭାବରେ ମାନବ ଲାଭ କରିବାକୁ ସମ ହୋଇଥାଏ । ସେହି ଜ୍ଞାନ ଲାଭର ନାମ କୈବଲ୍ୟ, ସେହି କୈବଲ୍ୟ ଲାଭ ପାତଞ୍ଜଲ ଦର୍ଶନର ପ୍ରତିପାଦ୍ୟ । ଯୋଗ ସମ୍ବନ୍ଧରେ ପାତଞ୍ଜଲର ସୂତ୍ର, ଯଥା :— "ଯୋଗଶ୍ଚିତ୍ତବୃତ୍ତିନିରୋଧଃ" ଅର୍ଥାତ୍ ଯାହାଦ୍ୱାରା ଚିତ୍ତବୃତ୍ତି

ରୋଧ କରାଯାଏ, ତାହାର ନାମ ଯୋଗ । ଯୋଗାଙ୍ଗ ବିଷୟରେ ସୂତ୍ର, ଯଥା :—"ଯମନିୟମାସନପ୍ରାଣାୟାମପ୍ରତ୍ୟାହାରଧାରଣାଧ୍ୟାନସମାଧୟୋଽ-ଷ୍ଟାବଙ୍ଗାନି ।" ଅର୍ଥାତ୍ ଯମ, ନିୟମ, ଆସନ, ପ୍ରାଣାୟାମ ଓ ପ୍ରତ୍ୟାହାର ଏହି ପାଞ୍ଚ ଗୋଟି ବହିରଙ୍ଗ; ଧାରଣା, ଧ୍ୟାନ ଓ ସମାଧି ଏହି ତିନି ଗୋଟି ଅନ୍ତରଙ୍ଗ; କାରଣ, ଯମନିୟମାଦି ସହିତ ଶରୀରର ସମ୍ବନ୍ଧ ଓ ଧ୍ୟାନଧାରଣାଦି ସହିତ ଚିତ୍ତର ସମ୍ବନ୍ଧ ବିଦ୍ୟମାନ ଥାଏ । ହେୟ, ହେୟହେତୁ, ହାନ ଓ ହାନୋପାୟ ଯୋଗଶାସ୍ତ୍ରର ଏହି ଚାରି ଗୋଟି ପଦ ।

ମହାରାଜ ! ପତଞ୍ଜଳିଙ୍କ ମତରେ ସଂସାର ହେୟ ଅର୍ଥାତ୍ ଦୁଃଖମୟ । ସେହି ଦୁଃଖର ହେତୁ ପ୍ରକୃତି ଓ ପୁରୁଷର ସଂଯୋଗ; ଯେହେତୁ ତାହାଠାରୁ ଅବିଦ୍ୟାର ଉତ୍ପତ୍ତି । ପ୍ରକୃତି ଓ ପୁରୁଷର ସଂଯୋଗନିବୃତ୍ତିର ନାମ ହାନ, ଯେହେତୁ ତଦ୍ଦ୍ୱାରା ଅବିଦ୍ୟାହାନ ହୋଇଥାଏ । ପ୍ରକୃତି ଓ ପୁରୁଷର ଭେଦଜ୍ଞାନହିଁ ହାନୋପାୟ; ଯେହେତୁ ତଦ୍ଦ୍ୱାରା ତତ୍ତ୍ୱଜ୍ଞାନ ଉଦୟ ହୋଇ ମିଥ୍ୟା ଜ୍ଞାନ ତିରୋହିତ ହୋଇଥାଏ । ପୁରୁଷ ଯୋଗଦ୍ୱାରା ସେହି ହାନୋପାୟ ସ୍ଥିର କରିଥାଏ । ଏହି ମତରେ କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧଭେଦରେ ଚିତ୍ତର ଅବସ୍ଥା ପାଞ୍ଚ ପ୍ରକାର । ଯେତେବେଳେ ଚିତ୍ତରେ ଚାଞ୍ଚଲ୍ୟ ଉପସ୍ଥିତ ହୁଏ, ସେହି ଅବସ୍ଥା ଚିତ୍ତର କ୍ଷିପ୍ତାବସ୍ଥା, ଅର୍ଥାତ୍ ଚିତ୍ତ ରଜୋଗୁଣାପନ୍ନ । ଚିତ୍ତ ମୋହାଚ୍ଛନ୍ନ ହେଲେ ମୂଢ଼ ଅର୍ଥାତ୍ ତମୋଭାବାପନ୍ନ । କେତେବେଳେ ସ୍ଥୈର୍ଯ୍ୟ ଓ କେତେବେଳେ ଅସ୍ଥୈର୍ଯ୍ୟଭାବ ସମାବେଶରେ ଚିତ୍ତ ବିକ୍ଷିପ୍ତ ଅର୍ଥାତ୍ ସତ୍ତ୍ୱ ଓ ରଜର ଦ୍ୱନ୍ଦ୍ୱଭାବାପନ୍ନ । ଅବିଚଳିତ ଭାବରେ ଧ୍ୟେୟ ପଦାର୍ଥ ପ୍ରତି ଚିତ୍ତ ଅଭିନିବିଷ୍ଟ ହେଲେ ଚିତ୍ତୈକାଗ୍ର ଓ ସମସ୍ତ ବୃତ୍ତିର ନିରୋଧ ହେଲେ ଚିତ୍ତନିରୁଦ୍ଧ । ବୃତ୍ତି ପାଞ୍ଚ ପ୍ରକାର । ଯଥା: —ପ୍ରାଣାୟାମ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି । ବିପର୍ଯ୍ୟୟ ମିଥ୍ୟାଜ୍ଞାନ, ବିକଳ୍ପ ଇଚ୍ଛାନୁଯାୟୀ କଳ୍ପନାବିଶେଷ । ଯୋଗ ପ୍ରଭାବରେ ଏହି ସକଳ ଚିତ୍ତବୃତ୍ତିର ରୋଧ ହୋଇଥାଏ । ଚିତ୍ତବୃତ୍ତିର ରୋଧ ହେଲେ ପୁରୁଷରେ କୌଣସି

ବିକୃତିର ସମ୍ଭାବନା ନ ଥାଏ । ଏହି ମତରେ ଚିତ୍ତର ବିକ୍ଷିପ୍ତ ଅବସ୍ଥାରେ ଯୋଗ ଆରମ୍ଭ କରାଯାଏ । ନିରୁଦ୍ଧ ଅବସ୍ଥାର ନାମ ପୂର୍ଣ୍ଣଯୋଗ । ଯଥା, ସୂତ୍ର :—"ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ ।" ଅର୍ଥାତ୍ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଚିତ୍ତବୃତ୍ତି ରୋଧ ହୁଏ । ଏହି ମତରେ ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ, ଅକ୍ରୋଧ ଓ ଅନସୂୟା ଏମାନଙ୍କୁ ଯମ ବୋଲାଯାଏ । ଯାହାଦ୍ୱାରା ପ୍ରାଣିମାନଙ୍କର ଅନାୟାସରେ ମଙ୍ଗଳ ସାଧିତ ହୁଏ, ତାହାକୁ ଅହିଂସା ବୋଲାଯାଏ । ଚୌର୍ଯ୍ୟ ଅଥବା ବଳପୂର୍ବକ ଯାହା କି ପରଧନ ଆହରଣ କରାଯାଏ, ତାହାର ନାମ ସ୍ତେୟ । ଏହାର ବିପରୀତକୁ ଅସ୍ତେୟ ବୋଲାଯାଏ । ମୈଥୁନ ତ୍ୟାଗର ନାମ ବ୍ରହ୍ମଚର୍ଯ୍ୟ । ପରଧନ ଗ୍ରହଣ ନ କରିବାର ନାମ ଅପରିଗ୍ରହ । ଅସ୍ମାରୁ ଯେଉଁ ନଷ୍ଟର ଭାବ ଜାତ ହୁଏ, ତାହାର ନାମ କ୍ରୋଧ । ସେହିରୂପ କ୍ରୋଧବର୍ଜିନକୁ ଅକ୍ରୋଧ ବୋଲାଯାଏ । ଅନ୍ୟାନ୍ୟ ଲୋକର ଧନଧାନ୍ୟ ଓ ଶ୍ରୀବୃଦ୍ଧି ଦେଖି ଯାହା କି ମନୋମଧ୍ୟରେ ନିଦାରୁଣ ତାପ ଜାତ ହୁଏ, ତାହାର ନାମ ଅସୂୟା; ଏହାର ବିପରୀତକୁ ଅନସୂୟା ବୋଲାଯାଏ । ତପ, ସ୍ୱାଧ୍ୟାୟ, ସନ୍ତୋଷ, ଶୌଚ, ହରିପୂଜନ, ସନ୍ଧ୍ୟାବନ୍ଦନା ଓ ଉପାସନା ପ୍ରଭୃତିକୁ ନିୟମ ବୋଲାଯାଏ । କୃଚ୍ଛ୍ରାୟଣାଦି ବ୍ରତାନୁଷ୍ଠାନରେ ଦେହର ଯାହା କି ବିଶୁଦ୍ଧତା ତାହାର ନାମ ତପ । ତପ ଯୋଗସାଧନର ପ୍ରଧାନ ଉପାୟ । ପ୍ରଣବ ଉଚ୍ଚାରଣପୂର୍ବକ ବେଦର ଅଧ୍ୟୟନକୁ ସ୍ୱାଧ୍ୟାୟ ବୋଲାଯାଏ । ଯଦୃଚ୍ଛାଲବ୍ଧ ଦ୍ରବ୍ୟରେ ଯାହା କି ତୃପ୍ତି, ତାହାର ନାମ ସନ୍ତୋଷ । ଧର୍ମପରାୟଣମାନେ କାମନା ପରିତ୍ୟାଗପୂର୍ବକ ଯଦୃଚ୍ଛାଲାଭରେ ସନ୍ତୁଷ୍ଟ ହୋଇଥାନ୍ତି । ଅସନ୍ତୁଷ୍ଟ ବ୍ୟକ୍ତି ସୁଖସୁଧା ଆସ୍ୱାଦନ ପକ୍ଷରେ କ୍ଷମ ନୁହନ୍ତି । ଶୌଚ ଦୁଇ ପ୍ରକାର ବାହ୍ୟ ଓ ଆଭ୍ୟନ୍ତରିକ । ମୃତ୍ତିକା ଓ ଜଳଦ୍ୱାରା ଶୁଦ୍ଧିକୁ ବାହ୍ୟଶୌଚ ବୋଲାଯାଏ ଓ ଚିତ୍ତର ଶୁଦ୍ଧିକୁ ଆଭ୍ୟନ୍ତରିକ ଶୌଚ ବୋଲାଯାଏ । ଫଳରେ ଆଭ୍ୟନ୍ତରିକ ଶୁଦ୍ଧିବିହୀନ ଲୋକର ପୁଣ୍ୟାନୁଷ୍ଠାନ ସିଦ୍ଧିପ୍ରଦ ନୁହେ ।

ଅର୍ଥାତ୍ ଅନ୍ତଃଶୁଦ୍ଧିବିହୀନ ଲୋକ କୋଟି କୁମ୍ଭ ଜଳରେ ସ୍ନାନ କଲେ ମଧ୍ୟ ଅସ୍ପୃଶ୍ୟ । ବାକ୍ୟ, ମନ, କର୍ମ, ସ୍ତୁତି, ସ୍ମରଣ, ଜପ ଓ ପୂଜନାଦିଦ୍ୱାରା ଦେବଙ୍କ ପ୍ରତି ଯାହାଙ୍କ ଦୃଢ଼ ଭକ୍ତିଭାବ ପ୍ରକାଶିତ ହୁଏ, ତାହାର ନାମ ଦେବପୂଜା ।

ମହାରାଜ ! ଏହି ସମସ୍ତ ଯମ ଓ ନିୟମଦ୍ୱାରା ଯେତେବେଳେ ଅନ୍ତଃକରଣ ଶୁଦ୍ଧ ହୁଏ ଓ ଇନ୍ଦ୍ରିୟମାନେ ବଶୀଭୂତ ହୁଅନ୍ତି, ସେତେ-ବେଳେ ଶାନ୍ତହୃଦୟ ଧର୍ମପରାୟଣମାନେ ଯୋଗାସନରେ ପ୍ରବୃତ୍ତ ହେବା କର୍ତ୍ତବ୍ୟ । ପଦ୍ମ, ସ୍ୱସ୍ତିକ ପୀଠ, ମୌକର୍ଣ୍ଣି, କୁଞ୍ଜର, ଅର୍ଦ୍ଧଚନ୍ଦ୍ରକ, ଦଣ୍ଡ, ବୀର, ସିଂହ ପ୍ରଭୃତି ଅନେକ ପ୍ରକାର ଆସନ ବର୍ଣ୍ଣିତ ହୋଇଅଛି । ମାତ୍ର ଯେ କୌଣସି ଆସନୋପବିଷ୍ଟ ଗୁରୁଭକ୍ତିପରାୟଣ ବୀତରାଗ ଓ ବିମତ୍ସର ବ୍ୟକ୍ତି ଅଭ୍ୟାସଦ୍ୱାରା ପଞ୍ଚପ୍ରାଣ ଜୟ କରିବା ପକ୍ଷରେ କ୍ଷମ ହୋଇଥାନ୍ତି । ଯୋଗିମାନେ ପୂର୍ବ ଅଥବା ଉତ୍ତରକୁ ମୁଖ କରି ପ୍ରାଣାୟାମରେ ପ୍ରବୃତ୍ତ ହୋଇଥାନ୍ତି । ଶରୀରସ୍ଥ ବାୟୁର ନାମ ପ୍ରାଣ, ପ୍ରାଣର ଆୟାମ ଅର୍ଥାତ୍ ନିଗ୍ରହକୁ ପ୍ରାଣାୟାମ ବୋଲିଯାଏ । ପ୍ରାଣାୟାମ ଦୁଇ ପ୍ରକାର; ଅଗର୍ଭ ଓ ସଗର୍ଭ । ଜପ ଓ ଧ୍ୟାନ ବ୍ୟତିରେକେ ଯେଉଁ ପ୍ରାଣାୟାମ ସାଧିତ ହୁଏ, ତାହାର ନାମ ଅଗର୍ଭ । ଜପ ଓ ଧ୍ୟାନଦ୍ୱାରା ଯେଉଁ ପ୍ରାଣାୟାମ ସାଧିତ ହୁଏ, ତାହାର ନାମ ସଗର୍ଭ । ଜପ ତିନି ପ୍ରକାର—ବାଚିକ, ଉପାଂଶୁ ଓ ମାନସ । ମନ୍ତ୍ରର ସମ୍ୟକ୍ ପରିଷ୍ଫୁଟ ଉଚ୍ଚାରଣକୁ ବାଚିକ ଜପ ବୋଲିଯାଏ । ମନ୍ତ୍ରର ପ୍ରତିପଦ ବିଶ୍ରୁତିପୂର୍ବକ ଉଚ୍ଚାରଣକୁ ଉପାଂଶୁ ଜପ ବୋଲିଯାଏ । ପ୍ରତିପଦର ପ୍ରକୃତ ଅର୍ଥ ଅନୁସନ୍ଧାନପୂର୍ବକ ମନେ ମନେ ଯେଉଁ ଜପ ଉଚ୍ଚାରଣ କରାଯାଏ, ତାହାକୁ ମାନସ ଜପ ବୋଲିଯାଏ । ଏହି ମାନସିକ ଜପଦ୍ୱାରା ଯୋଗ ସିଦ୍ଧ ହୋଇଥାଏ । ରେଚକ, ପୂରକ, କୁମ୍ଭକ ଓ ପୃଥକ୍ ଏହି ଚାରି ଉପାୟରେ ପ୍ରାଣାୟାମ ସାଧିତ ହୁଏ । ନାଡ଼ୀ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଭେଦରେ ତିନି ପ୍ରକାର । ଇଡ଼ା ଓ ପିଙ୍ଗଳା

ନାଡ଼ୀର ସୂର୍ଯ୍ୟ ଚନ୍ଦ୍ର ଅଧିଷ୍ଠାତ୍ରୀ ଦେବତା । ଇଡ଼ା ଓ ପିଙ୍ଗଳା ମଧ୍ୟ ଦେଇ ଯେଉଁ ନାଡ଼ୀ ଉତ୍ପନ୍ନ ହୋଇଥାଏ, ତାହାର ନାମ ସୁଷୁମ୍ନା । ସୁଷୁମ୍ନା ଅତି ସୂକ୍ଷ୍ମ ଓ ଗୁହ୍ୟତମ । ବାମଭାଗସ୍ଥ ନାଡ଼ୀରେ ବାୟୁ ରେଚକ କର ଦକ୍ଷିଣଭାଗସ୍ଥ ନାଡ଼ୀଦ୍ୱାରା ବାୟୁ ପୂରଣ କରିବାକୁ ହୁଏ । ଏହିରୂପ ବାୟୁ ସମ୍ପୂର୍ଣ୍ଣ ହେଲେ ତାହା ଦେହ ମଧ୍ୟରେ ଅବଦ୍ଧ ରଖି କୁମ୍ଭବତ୍ ଅବସ୍ଥିତ ହେବାକୁ କୁମ୍ଭକ ବୋଲାଯାଏ । ଯାହା କି ଅନ୍ତର୍ବାୟୁ ପରିତ୍ୟାଗ କରାଯାଇ ନାହିଁ ଓ ବାହ୍ୟବାୟୁ ଗ୍ରହଣ କରୁ ନାହିଁ, ତାହା ପୃଥକ୍ ଅଥବା ଶୂନ୍ୟ ନାମରେ କଥିତ ।

ମହାରାଜ ! ଧୀରେ ଧୀରେ ପ୍ରାଣାୟାମ ସାଧନ କରିବାକୁ ହୋଇଥାଏ, କାରଣ ତହିଁରୁ ଅନ୍ୟଥା ହେଲେ କେବଳ ରୋଗ ଭୋଗିବାକୁ ପଡ଼ିଥାଏ । ପ୍ରାଣାୟାମ ସାଧନପୂର୍ବକ ବିଷୟପ୍ରଯୁକ୍ତ ଇନ୍ଦ୍ରିୟମାନଙ୍କର ଯେ ନିଗ୍ରହ କରାଯାଏ, ତାହାର ନାମ ପ୍ରତ୍ୟାହାର । ଫଳରେ ଯେଉଁମାନଙ୍କର ଇନ୍ଦ୍ରିୟ ବଶୀଭୂତ ଓ ହୃଦୟ ପବିତ୍ରୀକୃତ, ସେହିମାନେ କ୍ରମଶଃ ଯୋଗ ସାଧନ କରିବା ପକ୍ଷରେ କ୍ଷମ ହୋଇଥାନ୍ତି । ଯେଉଁମାନେ ଇନ୍ଦ୍ରିୟମାନ ଅଧୀନ ନ କରି ଧ୍ୟାନ ବା ଯୋଗରେ ପ୍ରବୃତ୍ତ ହୋଇଥାନ୍ତି, ସେମାନେ ଯୋଗସାଧନରେ ସିଦ୍ଧି ଲାଭ କରିବାର ଦୂରେ ଥାଉ, କେବଳ ଅକାଳମୃତ୍ୟୁରେ ପତିତ ହୁଅନ୍ତି । ଏହି ହେତୁ ଯୋଗିଋଷିମାନେ ଇନ୍ଦ୍ରିୟମାନ ପ୍ରତ୍ୟାହୃତ କରି ମନୋନିଶ୍ଚଳପୂର୍ବକ ସେହି ଧ୍ୟେୟ ଶ୍ରୀମନ୍ନାରାୟଣଙ୍କୁ ଧ୍ୟାନ କରନ୍ତି । ଯେତେବେଳେ ଯୋଗିମାନଙ୍କର ଜ୍ଞାତୃଜ୍ଞେୟାଦି ଉପାଧି ନଷ୍ଟ ହୋଇଯାଏ ଓ ଜ୍ଞାନାମୃତପାନରେ ଏକମାତ୍ର ସତ୍ୟ ସନାତନ ପରଂବ୍ରହ୍ମ ହୃଦୟକ୍ଷେତ୍ରରେ ଦେଖି ପାରନ୍ତି, ସେତେବେଳେ ଯୋଗିମାନଙ୍କର ସମାଧି ସିଦ୍ଧ ହୋଇଥାଏ । ସମାଧି ସିଦ୍ଧ ହେଲେ ଯୋଗୀ ସଚ୍ଚିଦାନନ୍ଦ ବିଗ୍ରହରୂପେ ବିମଳ ଜ୍ୟୋତି ପ୍ରଦାନ କରିଥାନ୍ତି । ଯେଉଁ ସମାଧିଦ୍ୱାରା ସମସ୍ତ ବୃତ୍ତି ନିରୁଦ୍ଧ ହୁଏ, ତାହା ନିର୍ବୀଜ ସମାଧି । ସେହି

ଅବସ୍ଥା ସାଧିତ ହେଲେ ପୁରୁଷ ଶୁଦ୍ଧ ବୁଦ୍ଧ ବୋଲାଏ । ସେହି ଅବସ୍ଥାର ନାମ କୈବଲ୍ୟ ଲାଭ । କୈବଲ୍ୟ ଲାଭ ହେଲେ ପୁରୁଷ କି ଅବସ୍ଥା ପ୍ରାପ୍ତ ହୋଇଥାଏ, ତାହା ପାତଞ୍ଜଳ ଲେଖିଅଛନ୍ତି । ଯଥା :—"ପୁରୁଷାର୍ଥ-ଶୂନ୍ୟାନାଂ ଗୁଣାନାଂ ପ୍ରତିପ୍ରସବଃ କୈବଲ୍ୟଂ ସ୍ୱରୂପ ପ୍ରତିଷ୍ଠା ବା ଚିତ୍-ଶକ୍ତେରିତି ।" ଅର୍ଥାତ୍ ଗୁଣର ସହିତ ପୁରୁଷ ସମ୍ବନ୍ଧଶୂନ୍ୟ ହେଲେ ତାହାର ପୁନର୍ବାର ବନ୍ଧର ଉତ୍ପତ୍ତି ହୁଏ ନାହିଁ । ସେହି ଅବସ୍ଥାରେ କୈବଲ୍ୟ, ସେହି ଅବସ୍ଥାରେ ଭେଦଜ୍ଞାନ ନ ଥାଏ । ଆତ୍ମା ସ୍ୱସ୍ୱରୂପରେ ଅବସ୍ଥିତ । ପାତଞ୍ଜଳମତରେ ସୁଖ ଓ ଦୁଃଖ ଆତ୍ମାର ଧର୍ମ ନୁହେ; ତାହା ଚିତ୍ତର ଧର୍ମ, ମାତ୍ର ଆତ୍ମାରେ ପ୍ରତିବିମ୍ବ ହୋଇଥାଏ । ସୁତରାଂ ରାଗଦ୍ୱେଷାଦି ଚିତ୍ତବୃତ୍ତି ସହିତ ସମ୍ବନ୍ଧ ଛିନ୍ନ କରି ସ୍ୱସ୍ୱରୂପରେ ଅବସ୍ଥାନ କରି ପାରିଲେ କୈବଲ୍ୟ ଲାଭ ହୁଏ । ଧ୍ୟାନ ଅତି ପବିତ୍ର; ତାହା ଏହି ସଂସାରର କାଳାଗ୍ନି-ତାପତପ୍ତ ମନୁଷ୍ୟମାନଙ୍କ ପକ୍ଷରେ ଅମୃତବୃଷ୍ଟିତୁଲ୍ୟ । ଯେହେତୁ ମୁମୁକ୍ଷୁମାନେ ପ୍ରଣବସଂସ୍କୃତ ପରମାନନ୍ଦରୂପ ଶ୍ରୀମନ୍ନାରାୟଣଙ୍କୁ ଧ୍ୟାନ କରି ସଂସାରଯାତନାରୁ ପାର ହୋଇଥାନ୍ତି । ସେହି ପ୍ରଣବ ଅତି ପବିତ୍ର, ଯେହେତୁ ଏହାର ଅନ୍ତର୍ଗତ ଅକାର ବ୍ରହ୍ମରୂପ, ଉକାର ବିଷ୍ଣୁରୂପ ଓ ମକାର ରୁଦ୍ରରୂପ । ସେହି ତିନି ବର୍ଣ୍ଣର ମାତ୍ରାସମୁଚ୍ଚୟ ପରଂବ୍ରହ୍ମ ଓ ପରଂବ୍ରହ୍ମର ବାଚ୍ୟବାଚକ ପ୍ରଣବ । ପ୍ରଣବ ଉଚ୍ଚାରଣରେ ମହାପାପିମାନେ ପାପରୁ ମୁକ୍ତିଲାଭ କରନ୍ତି । ଯେଉଁମାନେ କେବଳ ପ୍ରଣବ ଉଚ୍ଚାରଣ-ପୂର୍ବକ ଅନ୍ତକାଳରେ ସେହି ଧ୍ୟେୟ ଶ୍ରୀମନ୍ନାରାୟଣଙ୍କ ଧ୍ୟାନ କରନ୍ତି, ସେହିମାନେ ଅନାୟାସରେ ପରମ ମୁକ୍ତି ଲାଭ କରନ୍ତି । ଯଥା ଗୀତା—
"ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ ମାମନୁସ୍ମରନ୍ । ଯଃ ପ୍ରୟାତି ତ୍ୟଜନ୍ ଦେହଂ ସ ଯାତି ପରମାଂ ଗତିଂ ॥"

ମହାରାଜ ! ଯୋଗୀମାନେ ପ୍ରତିଦିନ ବ୍ରହ୍ମା, ବିଷ୍ଣୁ ଓ ଶିବାତ୍ମକ ପ୍ରଣବ ଜପ କରି ନିଜ ଆତ୍ମା ମଧ୍ୟରେ ନିର୍ମଳ କୋଟି ସୂର୍ଯ୍ୟର ତେଜ ଧ୍ୟାନ

କରଥାନ୍ତି । ଯୋଗବଳରେ ଯୋଗିମାନେ ତ୍ରିକାଳଜ୍ଞ ହୋଇଥାନ୍ତି । ଯୋଗବଳରେ ଯୋଗିମାନେ ଯଥେଷ୍ଟ ସ୍ଥାନକୁ ଗମନ କରନ୍ତି, ଦୀର୍ଘ-ଜୀବନ ଧାରଣ କରନ୍ତି, ସର୍ବବିଷୟକ ଅଭିଜ୍ଞତା ଲାଭ କରନ୍ତି ଓ ଅଲୌକିକ ଘଟନା ପର୍ଯ୍ୟନ୍ତ ଦେଖାଇଥାନ୍ତି । ଯୋଗିମାନଙ୍କର ସମସ୍ତ ବିଷୟ ହୃଦକ୍ଷେତ୍ରରେ ଭାସମାନ ହୋଇଥାଏ । ଯୁକ୍ତ ଓ ଯୁଞ୍ଜାନଭେଦରେ ଯୋଗ ଦୁଇ ଶ୍ରେଣୀରେ ବିଭକ୍ତ । ଯୁକ୍ତଯୋଗୀ ସବୁ ସମୟରେ ସର୍ବ-ବିଷୟରେ ଅଭିଜ୍ଞତା ଲାଭ କରନ୍ତି । ଯୁଞ୍ଜାନଯୋଗୀ ଭାବିବା ବିଷୟରେ ଅଭିଜ୍ଞତା ଲାଭ କରନ୍ତି । ଯଥା :— "ଯୁକ୍ତସ୍ୟ ସର୍ବଦ ଭାନଂ ଚନ୍ତାସହ କୃତୋପରଃ ।" ଇତି କାରିକାବଳୀ ।

ମହାରାଜ ! ପ୍ରାଣାୟାମ, ନଶ୍ୱାସରୋଧ ପ୍ରଭୃତି ଯୌଗିକକ୍ରିୟା ଉପଯୁକ୍ତ ଗୁରୁଙ୍କ ନିକଟରେ ଶିକ୍ଷା କଲେ ଫଳପ୍ରଦ ହୋଇଥାଏ । ହନେ ଏହି ପବିତ୍ର ଭାରତଭୂମି ଏହି ଯୋଗବଳରେ ଶୀର୍ଷସ୍ଥାନୀୟ ହୋଇଥିଲା । ଅଜି ସେପରି ଗୁରୁ ନାହାନ୍ତି ଓ ସେପରି ଯୌଗିକ କ୍ରିୟା ମଧ୍ୟ ନାହିଁ । ଅମ୍ଭେମାନେ ଚର୍ମଚକ୍ଷୁରେ ଅଧିକାଂଶ ଏହି ମାତ୍ର ଦେଖୁଅଛୁଁ । ଯଥା—

"ଦିବୋପବାସୀ ନିଶିତ୍ୟାଗୀଶୀ ଜଟାଧରଃ ସନ୍ କୁଳଟାଭିଳାଷୀ ।
ଅୟଂ କଷାୟାରୁଣଗୁରୁଦଣ୍ଡଃ ସଠାଗ୍ରଣୀ ସର୍ପଇ ବିଶ୍ୱଭଣ୍ଡଃ ।"

ମହାରାଜ ! କେହି କେହି ଜୀବାତ୍ମା ଓ ପରମାତ୍ମାର ଅଭେଦ-ଜ୍ଞାନକୁ ଯୋଗ ବୋଲି କହନ୍ତି, ସେହି ମତରେ ଜୀବାତ୍ମା ଓ ପରମାତ୍ମାର ଭେଦଜ୍ଞାନ ନିବାରିତ ହେଲେ ସଂସାରପାଶ ଶତଧା ଛିନ୍ନ ହୋଇଯାଏ ।

ଇତି ପାତଞ୍ଜଳଦର୍ଶନବିଚାର ନାମକ ନବମ ପରିଚ୍ଛେଦ ସମାପ୍ତ ।

---

# ଦଶମ ପରିଚ୍ଛେଦ ।

ରାଜା ଜନାର୍ଦ୍ଦନ ମହାଶୟ ! ଇତିପୂର୍ବେ ଆପଣ ଯାହା କି ଦର୍ଶନ, ବେଦ, ଉପନିଷଦ ଓ ପୁରାଣାଦିର ସାର ସାର ବୃତ୍ତାନ୍ତ ଅବଲମ୍ବନ କରି ଜ୍ଞାନଲାଭର ଉପାୟ ଦେଖାଇବା ହେଲେ, ତାହା ଅସ୍ମଦାଦିର ବୋଧଗମ୍ୟ ନୁହେ । ଏଣୁ ଯେଉଁ ଉପାୟ ଅବଲମ୍ବନ କଲେ ଅମ୍ଭେମାନେ ସହଜରେ ସାଂସାରିକ ଯାତନାରୁ ପାର ହୋଇ ପାରିବୁଁ, ସେପରି ସୁଗମ ବିଷୟ ଶୁଣାଇବା ପ୍ରତି ଅନୁଗ୍ରହ ପ୍ରଦାନ କରିବା ହେଉନ୍ତୁ ।

ସାଧୁ—ମହାରାଜ ! ସତ୍ୟ, ଶୌଚ, ଜୀବରେ ଦୟା, ସତ୍ସଙ୍ଗ, ପୁଣ୍ୟକାର୍ଯ୍ୟ, ହରିଧ୍ୟାନ, ଶାନ୍ତି, କୂପ ତଡ଼ାଗ ପୁଷ୍କରିଣୀବାନ୍ଧ ଘାଟ, ଅନାଥପାଳନ, ଗ୍ରାମଦାନ, ଭୂମିଦାନ, ବସ୍ତ୍ରଦାନ, ବିଦ୍ୟାଦାନ, ବୃକ୍ଷାରୋପଣ ଓ ମନ୍ଦିର ନିର୍ମାଣ ପ୍ରଭୃତି ଆପଣମାନଙ୍କ ଧର୍ମଲାଭର ପ୍ରଧାନ ଉପାୟ । ଧର୍ମର ଅବିରୋଧୀ ଯେଉଁ ଯଥାର୍ଥ ବାକ୍ୟ ଉଚ୍ଚାରଣ କରାଯାଏ, ସେହି ଅମୃତ ଓ ସତ୍ୟବାକ୍ୟଦ୍ୱାରା ସମସ୍ତ ସିଦ୍ଧିଲାଭ ହୋଇଥାଏ । ମନୁଷ୍ୟ ମାତ୍ରକେ ସତ୍ୟପରାୟଣ ହେବା ଉଚିତ । ସତ୍ୟବାଦୀ ଲୋକ ସମସ୍ତଙ୍କର ପ୍ରୀତିଭାଜନ ଓ ଦେବଲୋକପର୍ଯ୍ୟନ୍ତର ପ୍ରଶଂସାର୍ହ ହୋଇଥାନ୍ତି ।

ଯେଉଁ କାର୍ଯ୍ୟଦ୍ୱାରା କୌଣସି ଜୀବର କ୍ଳେଶ ଜାତ ହୁଏ, ସେହି ହିଂସାତ୍ମକ କାର୍ଯ୍ୟ ଅମଙ୍ଗଳସାଧକ । ଯଥା—

"ସର୍ବହିଂସାନିବୃତ୍ତାଶ୍ଚ ନରାଃ ସର୍ବଂସହାଶ୍ଚ ଯେ ।
ସର୍ବସ୍ୟାଶ୍ରୟଭୂତାଶ୍ଚ ତେ ନରାଃ ସ୍ୱର୍ଗଗାମିନଃ ॥"

ଅଭ୍ୟନ୍ତରର ଶୁଦ୍ଧି ବିହୀନ ଲୋକ କୌଣସି ପୁଣ୍ୟକାର୍ଯ୍ୟ କଲେ ମଧ୍ୟ ତାହା ନିଷ୍ଫଳ ହୋଇଥାଏ । ଫଳରେ ଯେଉଁ ମାନଙ୍କ ଚିତ୍ତ ପବିତ୍ର ସେହିମାନଙ୍କ କାର୍ଯ୍ୟ ମଧ୍ୟ ଫଳପ୍ରଦ ହୋଇଥାଏ । ଯାହାହେଉ ଚିତ୍ତର ନିର୍ମଳତା ପୁଣ୍ୟାର୍ଜ୍ଜନର ପ୍ରଧାନ ଅଙ୍ଗ । ସେହି ନିର୍ମଳ ଭାବର ନାମ ଶୌଚ । ଜଳରେ ସ୍ନାନ କରି ଯାହା କି ଶୌଚ ହୁଅନ୍ତି, ତାହା କେବଳ ଲୋକାଚାର । ତହିଁରେ ଈଶ୍ୱର ସନ୍ତୁଷ୍ଟ ବା ଅସନ୍ତୁଷ୍ଟ କିଛି ନୁହନ୍ତି । ଆଉ ମଧ୍ୟ ପରଦୁଃଖପ୍ରହରଣେଚ୍ଛାରୂପକ ଦୟା ପୁଣ୍ୟ କାର୍ଯ୍ୟର ଗୋଟିଏ ପ୍ରଧାନ ଅଙ୍ଗ । ଯାହାର ଚିତ୍ତରେ ଦୟା ସ୍ପର୍ଶ କରି ନାହିଁ ଅର୍ଥାତ୍ ଯେ ନିର୍ଦ୍ଦୟ, ତାହାର କାର୍ଯ୍ୟ ମାତ୍ର ସୁଖ୍ୟାତିଦାୟକ ହେଲେ ମଧ୍ୟ ତାହା ପରଲୋକସାଧକ ନୁହେ । ଯଥା:—

"ଯା ଲୋକଦ୍ୱୟସାଧନୀ ତନୁଭୃତାଂ ସା ଚାତୁରୀ ଚାତୁରୀ ।"

ମହାରାଜ ! ପୁଣ୍ୟ କାର୍ଯ୍ୟ ହେଉ ବା ସୁଖ୍ୟାତି କାର୍ଯ୍ୟ ହେଉ, ସେଥିସକାଶେ ସତ୍‌ସହବାସ ଗୋଟିଏ ପ୍ରଧାନ ଉପାୟ । ଯେଉଁମାନେ ଦୁର୍ଜ୍ଜନ ସଂସର୍ଗ ପରିତ୍ୟାଗପୂର୍ବକ ସାଧୁସହବାସରେ କାଳାତିପାତ କରନ୍ତି, ସେମାନଙ୍କ ଗତି ମତି ଓ ଚରିତ୍ର ଭଲ ହେବାର ଦେଖି ଦେବଲୋକ ପର୍ଯ୍ୟନ୍ତ ତୁଷ୍ଟ ହୋଇଥାନ୍ତି । ସେହି ସଚ୍ଚରିତ୍ର ପ୍ରବୃତ୍ତି ବିବିଧ ପୁଣ୍ୟାନୁଷ୍ଠାନରେ ସହାୟତା ବିଧାନ କରେ । ଯେଉଁମାନେ ଦୁର୍ଜ୍ଜନମାନଙ୍କ ମୁଣ୍ଡରେ ମୁଣ୍ଡାଇଥାନ୍ତି, ଲୋକେ ସେମାନଙ୍କର ତୁଣ୍ଡେ ତୁଣ୍ଡେ ନିନ୍ଦାବାଦ କରିଥାନ୍ତି । ଦୁର୍ଜ୍ଜନସଂସର୍ଗ ଧର୍ମକାର୍ଯ୍ୟର ବିରୋଧୀ । ଏଣୁ ଦୁର୍ଜ୍ଜନ ସଂସର୍ଗ ପରିତ୍ୟାଗ କରିବା କର୍ତ୍ତବ୍ୟ । ଯଥା : —

"ତ୍ୟଜ ଦୁର୍ଜ୍ଜନସଂସର୍ଗଂ ଭଜ ସାଧୁସମାଗମଂ ।
କୁରୁ ପୁଣ୍ୟମହୋରାତ୍ରଂ ସ୍ମର ନିତ୍ୟମନିତ୍ୟତାଂ ॥"

"ଦୁର୍ଜ୍ଜନେନ ସମଂ ବୈରଂ ପ୍ରୀତିଂ ଚାପି ନ କାରୟେତ୍ ।
ଉଷ୍ଣୋ ଦହତି ଚାଙ୍ଗାରଃ ଶୀତଃ କୃଷ୍ଣାୟତେ କରଂ ॥"

ଫଳରେ ଯେଉଁ କାର୍ଯ୍ୟ କଲେ ଆପଣା ମନରେ କୌଣସି ପ୍ରକାର ଧକ୍କା ନ ଲାଗି ଅକୃତ୍ରିମ ସନ୍ତୋଷ ଜାତ ହୁଏ ଓ ଯେଉଁ କାର୍ଯ୍ୟ ଦେଖିଲେ ଉଦ୍ଧାର ଲୋକଙ୍କଠାରୁ ସାଧୁପୁରୁଷମାନଙ୍କ ମନରେ ଆନନ୍ଦ ଜାତ ହୁଏ, ସେହି କାର୍ଯ୍ୟର ନାମ ପୁଣ୍ୟ କାର୍ଯ୍ୟ । ସେପରି କାର୍ଯ୍ୟ ଦେଖିଲେ ଈଶ୍ୱର ପର୍ଯ୍ୟନ୍ତ ତୁଷ୍ଟ ହୋଇଥାନ୍ତି । ସର୍ବହିତକର କାର୍ଯ୍ୟରୂପ ପୁଣ୍ୟବଳରେ ଲୋକେ ସ୍ୱର୍ଗସୁଖ ଲାଭ କରନ୍ତି । ପୁଣ୍ୟବଳରେ ପାପିମାନେ ପାପରୁ ନିଷ୍କୃତି ଲାଭ କରନ୍ତି । ପୁଣ୍ୟବିହୀନ ଲୋକର ଜୀବନ ଧାରଣ ବୃଥା । ଯେଉଁମାନେ ସାତ୍ତ୍ୱିକ-ଭାବରେ ପ୍ରାଣିମାନଙ୍କର ହିତକର କାର୍ଯ୍ୟମାନ ଅନୁଷ୍ଠାନ କରିଥାନ୍ତି, ସେହି ମହାଭାଗମାନଙ୍କର ସ୍ୱୟଂ ଶ୍ରୀମନ୍ନାରାୟଣ ମଙ୍ଗଳ ବିଧାନ କରନ୍ତି । ସାର କଥା ଏହି ଯେ, ପୁଣ୍ୟ ଶାନ୍ତି ସୁଧାର ଗୋଟିଏ ପ୍ରଧାନ ଅଙ୍ଗ । ପୁଣ୍ୟବଳରେ ନିଜର ଶ୍ରେୟ ଆପେ ଆପେ ଅଧିଗତ ହୋଇଥାଏ । ମହାରାଜ ! ଯେଉଁ-ମାନେ ଜ୍ଞାନ, ଭକ୍ତି ଓ କର୍ମ ପ୍ରଭୃତି ଉପାର୍ଜନ କରିବାରେ ଅଶକ୍ତ ହୋଇଥାନ୍ତି, ସେମାନେ ଅଷ୍ଟାକ୍ଷର ମହାମନ୍ତ୍ର ଜପ କରି ମଧ୍ୟ ସେହି ପ୍ରାପ୍ୟ ଫଳ ଲାଭ କରି ପାରନ୍ତି । ପ୍ରଣବ ସହିତ ଅଷ୍ଟାକ୍ଷର ମହାମନ୍ତ୍ର ଭକ୍ତିପୂର୍ବକ ପ୍ରତିଦିନ ଜପ କଲେ ପାପିମାନେ ପାପରୁ ମୁକ୍ତି ଲାଭ କରନ୍ତି ।

ମହାରାଜ ! କେବଳ ମାଳ ଗଡ଼ାଇବାଦ୍ୱାରା ଯେ ସିଦ୍ଧି ଲାଭ ହୁଏ ନାହିଁ; କିନ୍ତୁ ଅଷ୍ଟାକ୍ଷର ମହାମନ୍ତ୍ର ହେଉ ବା ଯେ କୌଣସି ମନ୍ତ୍ର ହେଉ, ଯେପରି ତା ଜପର ସମସ୍ତ ଧ୍ୟାନ ବଳରେ ସେହି ଧ୍ୟେୟ ଶ୍ରୀମନ୍ନାରାୟଣ ହୃଦୟ-କ୍ଷେତ୍ରରେ ଜାଗରୁକ ହେବେ । ଯଥା :—

ଶଙ୍ଖଚକ୍ରଧର ଶାନ୍ତ ଗମ୍ଭୀର ପ୍ରଫୁଲ୍ଲବଦନ କିରୀଟକୁଣ୍ଡଳଶୋଭିତ-କର୍ଣ୍ଣ ନାନାଲଙ୍କାରବିଭୂଷିତ ଶ୍ରୀବତ୍ସାଙ୍କିତ ବିଶାଳବକ୍ଷ ଗଳଦେଶଶୋଭମାନ କୌସ୍ତୁଭ କଟିତଟପରିହିତପୀତାମ୍ବର ଶ୍ରୀବଣୀସେବିତପାଦପଦ୍ମ ସୁରସୁନ୍ଦ-ପ୍ରଣତ ଅଭୟବରପ୍ରଦ ଲୋକରଞ୍ଜନମୂର୍ତ୍ତି ଧ୍ୟାନ କରି ଜପ କଲେ ସିଦ୍ଧି ଲାଭ ହୁଏ ।

ଏହି ମୋହନଦ୍ରାସମାକୁଳ ମହାଘୋର ସୁଦୁସ୍ତର ସଂସାରସାଗରରେ ଯେଉଁମାନେ ଶ୍ରୀହରିର ଶରଣାପନ୍ନ, ସେହିମାନେ କୃତାର୍ଥ ଓ ପବିତ୍ର । ଯଥା :—

"ପାତାଳଂ ବ୍ରଜ ଯାହି ବା ସୁରପୁରୀମାରୋହମେରୋଃ ଶିରଃ
ପାରାବାରପରଂପରାଂ ତର ତଥାପ୍ୟାଶା ନ ଶାନ୍ତା ତବ ।
ଆଧିବ୍ୟାଧିପରାହତୋ ଯଦି ସଦା କ୍ଷେମଂ ନିଜଂ ବାଞ୍ଛସି
ଶ୍ରୀକୃଷ୍ଣେତି ରସାୟନଂ ରସୟରେ ଶୂନ୍ୟୈଃ କି ମନ୍ୟୈଃ ଶ୍ରମୈଃ ॥"

"ବାଞ୍ଛାବାପ୍ୟପଯେଷୁ ଧାବସି କଥଂ କା ଜୀବନାବସ୍ଥିତିଃ
ରାଜୀବପ୍ରିୟନନ୍ଦନାନୁଗଭୟଂ ନାଜୀଗଣଃ କିଂ ମୁଦା ।
ତତ୍କଷ୍ଟେବଂ ସତାଂ ନଶ୍ୱରଭରଃ ତ୍ୱାଜୀବବଦ୍ଦ୍ୱେଷଣଂ
ବାଞ୍ଛାଭୂତବଦ୍ଧଙ୍ଗରାଜ ଭବରେ ରାଜୀବନେତ୍ରେ ମନଃ ॥"

ସାର କଥା ଏହି ଯେ, ଆଶାର ନିବୃତ୍ତି ନାହିଁ, ଯେବେ ନିଜର କଲ୍ୟାଣ ପ୍ରତି ଇଚ୍ଛା ଥାଏ, ତେବେ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ମନୋନିବେଶ କରିବା କର୍ତ୍ତବ୍ୟ । ଅନ୍ୟାନ୍ୟ ଶ୍ରମ କେବଳ ବୃଥା, ତହିଁରେ କିଛି ମାତ୍ର ପ୍ରୟୋଜନ ନାହିଁ ।

ମହାରାଜ ! ଶତ୍ରୁ ଓ ମିତ୍ରଠାରେ ସମାନ ଭାବ, ସମସ୍ତ ବିଷୟରେ ବିନୟଶୀଳତା, ଯଦୃଚ୍ଛା ଲାଭରେ ସନ୍ତୋଷ, ଏହି ଭାବଗୁଡ଼ିକୁ ଶାନ୍ତି ବୋଲିଯାଏ । ଶାନ୍ତି କେବଳ ସୁଖର କାରଣ । ମନୁଷ୍ୟ ଯେତେ ଦିନ ପର୍ଯ୍ୟନ୍ତ ଶାନ୍ତିସୁଧା ଲାଭରେ ଅକ୍ଷମ, ତେତେ ଦିନ ପର୍ଯ୍ୟନ୍ତ ସୁଖଭୋଗରେ ଅକ୍ଷମ ହୋଇଥାଏ । ଯେଉଁମାନେ ଶାନ୍ତିସୁଧା ପାନ କରି ନାହାନ୍ତି, ସେମାନେ ଇନ୍ଦ୍ରପଦ ଓ କୁବେରର ସମ୍ପଦ ପାଇ ସୁଦ୍ଧା ଦୁରାକାଂକ୍ଷା ହେତୁ ନିଜ ନିଜକୁ ଦରିଦ୍ର ମନେ କରିଥାନ୍ତି । ସୁତରାଂ ଶାନ୍ତି ସୁଖଲାଭର ଅଦ୍ୱିତୀୟ ଉପାୟ । ଆଶା ଶାନ୍ତି ସୁଖର ଅନ୍ତରାୟ ସାଧକ; ଆଶା ଯେତେ ବଢ଼ାଇବ,

ତେତେ ବଢ଼ିବାକୁ ଲାଗିବ । ଆଶାର ଅବଧି ନାହିଁ, ଫଳରେ ଯହିଁରୁ ଆଶା-ନିବୃତ୍ତି, ସେହି ଜାଣି ହସ୍ତଗତ ପ୍ରାପ୍ତି । ଯଥା :—

"ଯଦା ଯଦୈବ ବାଞ୍ଛେନ ତଦେବ ବାଞ୍ଛା ପ୍ରବର୍ତ୍ତତେ ।
ପ୍ରାପ୍ତ ଏବାର୍ଥତଃ ସୋଽର୍ଥୋ ଯତୋ ବାଞ୍ଛା ନିବର୍ତ୍ତତେ ।"

"ନିଃସ୍ୱୋ ବଷ୍ଟି ଶତଂ ଶତୀ ଦଶଶତଂ ଲକ୍ଷଂ ସହସ୍ରାଧିପୋ
ଲକ୍ଷେଶଃ କ୍ଷିତିପାଲତାଂ କ୍ଷିତିପତିଶ୍ଚକ୍ରେଶତ୍ୱଂ ପୁନଃ ।
ଚକ୍ରେଶଃ ପୁନରିନ୍ଦ୍ରତାଂ ସୁରପତିର୍ବ୍ରାହ୍ମଂ ପଦଂ ବାଞ୍ଛତି
ବ୍ରହ୍ମା ଶୈବପଦଂ ଶିବୋ ହରିପଦମାଶାବଧିଂ କୋ ଗତଃ ॥"

"ସନ୍ତୋଷାମୃତତୃପ୍ତାନାଂ ଯତ୍ସୁଖଂ ଶାନ୍ତ ଚେତସାଂ ।
କୁତସ୍ତଦ୍ଧନଲୁବ୍ଧାନାମିତଶ୍ଚେତଶ୍ଚ ଧାବତାଂ ॥"

"କନ୍ଦୈଃ ଫଳୈର୍ମୁନିବରାଃ କ୍ଷପୟନ୍ତି କାଳଂ
ଶୁଷ୍କୈସ୍ତୃଣୈର୍ବନଗଜା ବଳିନୋ ଭବନ୍ତି ।
ସର୍ପାଃ ପିବନ୍ତି ପବନଂ ନ ଚ ଦୁର୍ବଳାସ୍ତେ
ସନ୍ତୋଷ ଏବ ପରମଂ ବଳମସ୍ତି ଲୋକେ ॥"

ମହାରାଜ ! ଧନାଢ଼୍ୟପକ୍ଷରେ କୂପ, ତଡ଼ାଗ ଓ ପୁଷ୍କରଣୀ ପ୍ରଭୃତି ଖୋଳାଇବା କିଛି ବଡ଼ କଥା ନୁହେ, ତେବେ ଯେଉଁମାନେ ନିଷ୍କାମ ଭକ୍ତିର ସହିତ ସର୍ବସାଧାରଣହିତକରେ ତଡ଼ାଗାଦି ଖନନ କରନ୍ତି, ସେମାନଙ୍କ ପ୍ରତି ଭଗବାନ୍ ସ୍ୱୟଂ ତୁଷ୍ଟ ହୋଇ ସେମାନଙ୍କୁ ସାଂସାରିକ ଯାତନାରୁ ଉଦ୍ଧାର କରିଥାନ୍ତି । ଯେହେତୁ ମାର୍ତ୍ତଣ୍ଡମଣ୍ଡଳ ପ୍ରଖର ମୟୂଖ ତାଡିତ ପଥଶ୍ରମରେ କ୍ଲାନ୍ତ ପଥିକକୁଳ ସରୋବରାଦିତୀରସ୍ଥିତ ସ୍ନିଗ୍ଧ ଛାୟାବିଶିଷ୍ଟ ତରୁତଳରେ ଉପବେଶନପୂର୍ବକ ଜଳପାନଦ୍ୱାରା ତୃଷା ନିବାରଣ କରି ଶାନ୍ତି ଲାଭ କରନ୍ତି, ସେତେବେଳେ ସ୍ୱୟଂ ଭଗବାନ୍ ତଡ଼ାଗାଦିକର୍ତ୍ତାର ପାପରାଶି ବିନାଶପୂର୍ବକ ସ୍ୱର୍ଗଦ୍ୱାର ଉଦ୍ଘାଟନ

କରଥାନ୍ତି । ଆଉ ମଧ୍ୟ ଯେଉଁମାନେ ମାର୍ଗର ଉଭୟ ପାର୍ଶ୍ୱରେ ଛାୟାପ୍ରଦ ନାନା, ଅଶ୍ୱତ୍ଥ ଓ ଆମ୍ର ପ୍ରଭୃତି ବୃକ୍ଷମାନ ରୋପଣ କରନ୍ତି, ସେମାନେ ଛାୟାଦାନ ହେତୁ ତତୋଽଧିକ ଫଳ ଲାଭ କରନ୍ତି । କାରଣ ଯେତେବେଳେ ଜୀବଗଣ ସୂର୍ଯ୍ୟତାପରେ କ୍ଲାନ୍ତ ହୋଇ ସେହି ସକଳ ବୃକ୍ଷତଳେ ବିଶ୍ରାମ କରି ସନ୍ତୋଷ ଲାଭ କରନ୍ତି, ସେତେବେଳେ ସ୍ୱୟଂ ଭଗବାନ ବୃକ୍ଷାଦି ରୋପଣକର୍ତ୍ତା ପ୍ରତି ସନ୍ତୁଷ୍ଟ ହୋଇଥାନ୍ତି ।

ମହାରାଜ ! ପରୋପକାର ଧର୍ମଲାଭର ଶ୍ରେଷ୍ଠ ଏବଂ ଅଦ୍ୱିତୀୟ ଉପାୟ । ଜଗତକର୍ତ୍ତା କେତେ ମହାତ୍ମାଙ୍କୁ ଏପରି ଭାବରେ ସୃଷ୍ଟି କରିଅଛନ୍ତି ଯେ, ସେମାନେ ନିଜ ନିଜର ସ୍ୱାର୍ଥପରତା ଛାଡ଼ି ଦେଶର ଓ ପରର ଉପକାର ସକାଶେ ଧନବ୍ୟୟ କଥା ଦୂରେ ଥାଉ, ଅମୂଲ୍ୟ ଜୀବନ ପର୍ଯ୍ୟନ୍ତ ବିସର୍ଜନ କରିଥାନ୍ତି । ଆଉ ମଧ୍ୟ କାହାଙ୍କୁ ଏପରି ଭାବରେ ସୃଷ୍ଟି କରିଅଛନ୍ତି ଯେ, ସେମାନେ ନିଜ ନିଜର କ୍ଷତି ନ କରି ଦେଶୋପକାର ଓ ପରୋପକାର ସକାଶେ ପ୍ରାଣପଣେ ଯତ୍ନଶୀଳ ହୋଇଥାନ୍ତି । ଯଥା :—

"ଏକେ ସତ୍ପୁରୁଷାଃ ପରାର୍ଥଘଟକାଃ ସ୍ୱାର୍ଥଂ ପରିତ୍ୟଜ୍ୟ ଯେ
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟମଭୃତଃ ସ୍ୱାର୍ଥାବିରୋଧେନ ଯେ ।
ତେଽମୀ ମାନୁଷରାକ୍ଷସାଃ ପରହିତଂ ସ୍ୱାର୍ଥାୟ ନିଘ୍ନନ୍ତି ଯେ
ଯେ ତୁ ଘ୍ନନ୍ତି ନିରର୍ଥକଂ ପରହିତଂ ତେ କେ ନ ଜାନୀମହେ ।"

"ରତ୍ନାକରଃ କିଂ କୁରୁତେ ସ୍ୱରତ୍ନୈ-
ର୍ବିନ୍ଧ୍ୟାଚଳଃ କିଂ କରିଭିଃ କରୋତି ।
ଶ୍ରୀଖଣ୍ଡଖଣ୍ଡୈର୍ମଲୟାଚଳଃ କିଂ
ପରୋପକାରାୟ ସତାଂ ବିଭୂତିଃ ।।"

ମହାରାଜ ! ଫଳରେ ଚୈତନ୍ୟବାନ୍ ଲୋକର କଥା ଦୂରେ ଥାଉ, ଉପକାରର ପ୍ରତ୍ୟୁପକାର ସକାଶେ ବୃକ୍ଷାଦି ଜଡ଼ ପଦାର୍ଥ ପର୍ଯ୍ୟନ୍ତ ଯତ୍ନଶୀଳ, ସୁତରାଂ ଉପକାରର ମହିମା ବର୍ଣ୍ଣନାତୀତ । ଯଥା :—

"ପ୍ରଥମବୟସି ଦତ୍ତଂ ତୋୟମଳ୍ପଂ ସ୍ମରନ୍ତଃ
ଶିରସି ନିହିତଭାରା ନାରିକେଳା ନରାଣାଂ ।
ସଲିଳମମୃତକଳ୍ପଂ ଦଦ୍ୟୁରାଜୀବନାନ୍ତଂ
ନ ହି କୃତମୁପକାରଂ ସାଧବୋ ବିସ୍ମରନ୍ତି ॥"

ସାର କଥା ଏହି ଯେ, ଯେପରି କି ବୃକ୍ଷାଦମାନେ ପ୍ରଖର ମାର୍ତ୍ତଣ୍ଡମଣ୍ଡଳର ମୟୂଖମାଳାରେ ତାପିତ ହୋଇ ପରୋପକାର ସକାଶେ ଛାୟା ପ୍ରଦାନ କରନ୍ତି, ସେହିପରି ସତ୍ପୁରୁଷମାନେ ମଧ୍ୟ କଷ୍ଟ ସ୍ୱୀକାରପୂର୍ବକ ପରୋପ-କାରାର୍ଥେ ବ୍ରତୀ ହୋଇଥାନ୍ତି । ଯଥା :—

"ସ୍ୱସୁଖନିରଭିଲାଷଃ ଖିଦ୍ୟସେ ଲୋକହେତୋଃ
ପ୍ରତିଦିନମଥବା ତେ ବୃତ୍ତିରେବଂ ବିଧୈବ ।
ଅନୁଭବତି ହି ମୂର୍ଦ୍ଧ୍ନା ପାଦପସ୍ତୀବ୍ରମୁଷ୍ଣଂ
ଶମୟତି ପରିତାପଂ ଛାୟୟା ସଂଶ୍ରିତାନାଂ ॥"

ମହାରାଜ ! କେବଳ ଧନୀ ପୁରୁଷମାନଙ୍କ ସହବାସ କଲେ ଯେ ଲୋକେ ଗୌରବବାନ୍ ହୁଅନ୍ତି, ତାହା ନୁହେ । କିନ୍ତୁ ଧନୀ ହୁଅନ୍ତୁ ବା ନିର୍ଦ୍ଧନ ହୁଅନ୍ତୁ, ଯେଉଁମାନେ କି ଧର୍ମାଧର୍ମ ଓ ନ୍ୟାଯ୍ୟାନ୍ୟାଯ୍ୟ ବିବେଚନା-ପୂର୍ବକ ବିବେକଶକ୍ତିର ପରାମର୍ଶାନୁସାରେ ଜଗତର ହିତାନୁଷ୍ଠାନରେ ଅନୁରକ୍ତ ଥାନ୍ତି, ସେହିମାନଙ୍କ ସହବାସରେ ସାଧୁତା ଲାଭ ହୋଇଥାଏ । ସୁତରାଂ ଏଥିରେ ପ୍ରାୟ ସତ୍ସହବାସ ମଧ୍ୟ ଫଳପ୍ରଦ ହୋଇଥାଏ । ଯଥା:—

କିଂ ତେନ ହେମଗିରିଣା ରଜତାଦ୍ରିଣା ବା
ଯତ୍ର ସ୍ଥିତା ହି ତରବସ୍ତରବସ୍ତ ଏବ ।
ବନ୍ଦାମହେ ମଲୟମେବ ଯଦାଶ୍ରୟେଣ
ଶାକୋଟନିମ୍ବକୁଟଜାନ୍ୟପି ଚନ୍ଦନାନି ॥

ମହାରାଜ ! ଜଟା ବାନ୍ଧ କୌପୀନ ମାତ୍ର ବସ୍ତ୍ର ଲଗାଇ ଚିଲମ ଖାଇଲେ ଯେ ସାଧୁ ବୋଲାଇବା, ତାହା ପ୍ରକୃତ ନୁହେ; ଆଉ ମଧ୍ୟ ଅନ୍ୟଦାଦମାନଙ୍କ ପ୍ରାପ୍ତ ତତ୍ତ୍ୱ ଉପଦେଶ ଦେବାଦ୍ୱାରା ଯେ ପ୍ରକୃତ ସାଧୁ ବୋଲାଇବା, ତାହା ମଧ୍ୟ ଯଥାର୍ଥ ନୁହେ; କିନ୍ତୁ ଯେଉଁମାନେ ବ୍ରହ୍ମାନନ୍ଦ-ଦ୍ୱାରା ବିଷୟାନନ୍ଦ ଦୂର କରିଥାନ୍ତି ଏବଂ ଏହି ସଂସାର-କାନନ ଷଣ୍ଢଙ୍କୁ ମନେ କରି ବୀତରାଗ ଓ ବିମତ୍ସର ହୋଇ ବିଷୟବିରତ ଯୋଗଦ୍ୱାରା ସାଧନର ସାର୍ଥକତା ଲଭିଥାନ୍ତି ସେହିମାନେ ପ୍ରକୃତ ସାଧୁ । ଜ୍ଞାନ ଅଥବା ଅଜ୍ଞାନବଶତଃ ପାପ ଅଚରିତ ହେଲେ ସେହି ସାଧୁପୁରୁଷମାନଙ୍କ ଦର୍ଶନ ଓ ପରିଚର୍ଯ୍ୟାଦ୍ୱାରା ତାହା ବିନଷ୍ଟ ହୋଇଯାଏ । ଆଉ ମଧ୍ୟ ସେହି ମହାତ୍ମାମାନଙ୍କ ଗୁଣରାଶି କୀର୍ତ୍ତନ ବା ଶ୍ରବଣ କଲେ ପାପ ବିଦୂରିତ ହୁଏ । ସୁତରାଂ ଆତ୍ମପରଜ୍ଞାନଶୂନ୍ୟ ସମଦର୍ଶୀମାନେ ପ୍ରକୃତ ସାଧୁ ବୋଲାନ୍ତି । ଯଥାः—

"ମନସି ବଚସି କାୟେ ପୁଣ୍ୟପୀୟୂଷପୂର୍ଣ୍ଣା
ସ୍ତ୍ରିଭୁବନମୁପକାରଶ୍ରେଣୀଭିଃ ପ୍ରୀଣୟନ୍ତଃ ।
ପରଗୁଣପରମାଣୂନ୍ ପର୍ବତୀକୃତ୍ୟ ନିତ୍ୟଂ
ନିଜହୃଦି ବିକଶନ୍ତଃ ସନ୍ତି ସନ୍ତଃ କିୟନ୍ତଃ ॥"

ମହାରାଜ ! ଦାନ ଧର୍ମାଦି ସକାଶେ ବାଲ୍ୟ, ଯୁବା ଓ ବୃଦ୍ଧ ଅବସ୍ଥା ଅପେକ୍ଷା କରିବା କର୍ତ୍ତବ୍ୟ ନୁହେ; ଯେହେତୁ ଏହି ଅନିତ୍ୟ ଦେହରେ ଅଣୁମାତ୍ର ବିଶ୍ୱାସ ନାହିଁ । କି ପଣ୍ଡିତ, କି ମୂର୍ଖ, କି ଧନୀ, କି ଦରିଦ୍ର, କି ଦୁର୍ବୃତ୍ତ ସମସ୍ତେ କୃତାନ୍ତର ଅଧୀନ । ଗର୍ଭରେ, ଶୈଶବରେ, ଯୌବନରେ ଓ ବାର୍ଦ୍ଧକ୍ୟରେ ଦେହ ଦିନେ ମୃତ୍ୟୁର ବଶୀଭୂତ ହେବାକୁ ହେବ । ସ୍ୱର୍ଗରେ, ମର୍ତ୍ତ୍ୟରେ, ପାତାଳରେ, ଜଳରେ, ସ୍ଥଳରେ ଓ ଅନ୍ତରୀକ୍ଷରେ ଥିଲେ ମଧ୍ୟ ପ୍ରାଣୀ ମାତ୍ର ନିଶ୍ଚୟ ମୃତ୍ୟୁର ଅଧୀନ । କି ସାଗର

ବଧ, କି ନିବିଡ଼ ଅରଣ୍ୟ, କି ମରୁଭୂମି, କି ଅତ୍ୟୁଚ୍ଚ ପର୍ବତ ପ୍ରାଣିମାନେ ଯେ କୌଣସି ସ୍ଥାନର ଆଶ୍ରୟ ନେଲେ ମଧ୍ୟ ନିୟତି ହାତରୁ ରକ୍ଷା ପାଇବାର ଉପାୟ ନାହିଁ । ଯଥା:—

"ମାତୁଲୋଯସ୍ୟ ଗୋବିନ୍ଦଃ ପିତା ଯସ୍ୟ ଧନଞ୍ଜୟଃ ।
ସୋଽଭିମନ୍ୟୁ ରଣେ ଶେତେ ନିୟତିଃ କେନ ବାଧତେ ॥"

ମନୁଷ୍ୟ ଯାହା କି ଶ୍ରୀ ଲାବଣ୍ୟ ଦେହ ବୀର୍ଯ୍ୟ ଧନ ଯୌବନ ପୁତ୍ର ଓ ଦାର୍ ପ୍ରଭୃତି ଚିରସ୍ଥାୟୀ ଭାବିଥାଏ, ତାହା ନିତାନ୍ତ ଭ୍ରମ । ମର୍ତ୍ତ୍ୟ ମଣ୍ଡଳରେ ଜନ୍ମଗ୍ରହଣ କଲେ ରାମ ଓ କୃଷ୍ଣାଦି ଦେବତା ପର୍ଯ୍ୟନ୍ତ ମୃତ୍ୟୁର ଅଧୀନ ହୋଇ ପ୍ରାକ୍ତନ କର୍ମଫଳ ଭୋଗ କରିଥାନ୍ତି । ଏହି ସ୍ଥାବର-ଜଙ୍ଗମାତ୍ମକ ନିଖିଳ ଜଗତ୍ ଦୈବର ଅଧୀନ, ଜୀବର ଜନ୍ମ ମୃତ୍ୟୁ କେବଳ ଦୈବ ଜାଣେ । ତାହା ଅପର କେହି ଜାଣିବାର କ୍ଷମତା ନାହିଁ ବା ପ୍ରାକ୍ତନ ଫଳ ଖଣ୍ଡିବାର ଉପାୟ ନାହିଁ । ଯଥା :—

"ବ୍ରହ୍ମା ଯେନ କୁଲାଲବନ୍ନିୟମିତୋ ବ୍ରହ୍ମାଣ୍ଡଭାଣ୍ଡୋଦରେ
ବିଷ୍ଣୁର୍ଯେନ ଦଶାବତାରଗହନେ କ୍ଷିପ୍ତୋ ମହାସଙ୍କଟେ ।
ରୁଦ୍ରୋଯେନ କପାଲପାଣିପୁଟକେ ଭିକ୍ଷାଟନଂ କାରିତଃ
ସୂର୍ଯ୍ୟୋଭ୍ରାମ୍ୟତି ନିତ୍ୟମେବ ଗଗନେ ତସ୍ମୈ ନମଃ କର୍ମଣେ ॥"

ମହାରାଜ ! ଯାହା କି ପରର ଉନ୍ନତିସ୍ରୋତରେ ବାଧା ପ୍ରଦାନ-ପୂର୍ବକ ଘୋରତର ମମତାରେ ଅଭିଭୂତ ହୋଇ ଧନ ଉପାର୍ଜନ ପ୍ରଭୃତି ବିଶେଷ କଷ୍ଟ ସହ୍ୟ କରିବାକୁ ହୋଇଥାଏ, ତାହା ସବୁ ବୃଥା; କାରଣ ମାଟିର ଧନ ମାଟିରେ ପଡ଼ି ରହିଥାଏ । ଦେହ ଧନ ଆତ୍ମୀୟ ସ୍ୱଜନ କିମ୍ବା ଅନ୍ୟ କାହାର କାର୍ଯ୍ୟରେ ଆସିଥାଏ । ଯାହା କି ଧନ ଉପାର୍ଜନ କରି ସତ୍କାର୍ଯ୍ୟରେ ବ୍ୟୟ କରିଥିବ କିମ୍ବା ନିଜେ ଖାଇଥିବ ଓ ହାତ ଟେକି

ଦେଇଥିବ, ସେହି ନେ ଜାଣ ନାହିଁ । ଏତଦ୍‌ଭିନ୍ନ ଧନ ସବୁ ପଡ଼ି ରହେ, କିଛି ମାତ୍ର ସଙ୍ଗରେ ଯାଏ ନାହିଁ ଓ ପରଲୋକରେ ସହାୟ ହୁଏ ନାହିଁ । ସେଠାରେ କେବଳ ଧର୍ମ ସହାୟ । ସେଠାକୁ ସ୍ୱଜନ ଆତ୍ମୀୟ ବନ୍ଧୁ ପୁତ୍ର ଓ ଦାରା ପ୍ରଭୃତି ସଙ୍ଗରେ ଯାଆନ୍ତି ନାହିଁ, ସହାୟ ହୁଅନ୍ତି ନାହିଁ ଓ ପାପ ପୁଣ୍ୟ କିଛି ମାତ୍ର ବହନ କରନ୍ତି ନାହିଁ । ସୁତରାଂ ଏକାକୀ ବିଦାୟ ହେବାକୁ ହୋଇଥାଏ । ସେତେବେଳେ ଆଶା ଭରସା ପ୍ରଭୃତି କିଛି ମାତ୍ର ନ ଥାଏ । କେବଳ ପାପଗଣ କାଳେ ଘେରି କୃତାନ୍ତର ତର୍ଜନ ଗର୍ଜନାଦରେ କାତର ହେବାକୁ ହୋଇଥାଏ । ଅହୋ ! ସେଠାରେ କେତେ ଦୁଃଖ, ତହିଁରୁ ମୋଚନ ହେବାକୁ ଧର୍ମ ଭିନ୍ନ ଉପାୟ ନାହିଁ । ଏକା ଧର୍ମ ପରଲୋକରେ ବନ୍ଧୁ ଓ ସହାୟ; ସେଠାରେ କେବଳ ପାପ ଓ ପୁଣ୍ୟର ବିଚାର ମାତ୍ର, ରାଜା ପ୍ରଜା ପଣ୍ଡିତ ମୂର୍ଖ ଧନୀ ଦରିଦ୍ର ବଡ଼ ଜାତି ସାନ ଜାତି ଚଣ୍ଡାଳ ବ୍ରାହ୍ମଣ କରଣ ଓ ପଠାଣ ଏପରି କିଛି ବିଚାର ଥାଏ ନାହିଁ ।

ମହାରାଜ ! ସଂସାରରେ ଯାହା କିଛି ପୁଣ୍ୟ କାର୍ଯ୍ୟ ଅଛି, ସେଥି ମଧ୍ୟରେ ଦାନ ଧର୍ମ ଶ୍ରେଷ୍ଠ । ପ୍ରତ୍ୟୁପକାରର ଇଚ୍ଛା ନ କରି ଯାହା କି ପାତ୍ରରେ ଦାନ କରାଯାଏ, ସେହି ଦାନ ସାତ୍ତ୍ୱିକ ଦାନ । ଅର୍ଥାତ୍ ଯେଉଁମାନଙ୍କର ପରନାମ ସହିତ ସମ୍ପର୍କ ଥାଏ, ଯେଉଁମାନେ କାୟମନୋବାକ୍ୟରେ ଜଗତର ହିତ କାମନା କରନ୍ତି ଓ ଯେଉଁମାନେ ମାତ୍ସର୍ଯ୍ୟ ପ୍ରଭୃତି ଦୋଷରେ ଅକଳୁଷିତ, ସେହିମାନେ ଦାନର ପାତ୍ର ଅଟନ୍ତି । ସେହିପରି ପାତ୍ରମାନଙ୍କୁ ଦାନ ଦେବାର ନାମ ସାତ୍ତ୍ୱିକ ଦାନ । ଯଥା ଗୀତା :—

"ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
ଦେଶେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ବିଦୁଃ ॥"

ସାଧାରଣ ଦାନ ମଧ୍ୟରେ ଅନ୍ନଦାନ ଶ୍ରେଷ୍ଠ । ଯେହେତୁ ପ୍ରତିଗ୍ରହୀତାର କେବଳ ଅନ୍ନଦାନରେ ନାହିଁ ଶବ୍ଦ ଉଚ୍ଚାରଣ ହୋଇଥାଏ । ଅନ୍ୟାନ୍ୟ

ହାନରେ ନେବା ଆଶା ବୃଦ୍ଧି ପାଏ । ଏଣୁ ଅନ୍ନଦାନ ଦାନ ମଧ୍ୟରେ ସର୍ବଶ୍ରେଷ୍ଠ ।

ମହାରାଜ ! ଅନାଥମାନଙ୍କୁ ଆଶ୍ରୟ ଦେଇ ପ୍ରତିପାଳନ କଲେ ଧର୍ମ ଲାଭ ହୁଏ । ଯେତେବେଳେ ଅନାଥ ବାଳକ ଓ ବାଳିକା, ବୃଦ୍ଧ ଓ ବୃଦ୍ଧା ପ୍ରଭୃତି ଅନ୍ନ ବସ୍ତ୍ରାଦିରେ ତୁଷ୍ଟ ହୋଇ ଅନ୍ତରର ସହିତ ଆଶୀର୍ବାଦ କରନ୍ତି, ସେତେବେଳେ ଭଗବାନ୍ ସ୍ୱୟଂ ତୁଷ୍ଟ ହୋଇ ଆଶ୍ରୟଦାତା-ମାନଙ୍କର ପରକାଳ ସକାଶେ ସ୍ୱର୍ଗଦ୍ୱାର ଉନ୍ମୁକ୍ତ କରିଥାନ୍ତି । ଯେପରି କି ଅନାଥପାଳନ ଗୋଟିଏ ପବିତ୍ର ଧର୍ମ, ସେହିପରି ରୋଗିମାନଙ୍କୁ ରୋଗରୁ ମୁକ୍ତ କରାଇବା ଓ ବାଳକମାନଙ୍କୁ ବିଦ୍ୟାଦାନ ଦିଆଇବାର ଦେଖି ଭଗବାନ୍ ସ୍ୱୟଂ ତୁଷ୍ଟ ହୋଇଥାନ୍ତି ।

ମହାରାଜ ! ମନ୍ଦିରମାନଙ୍କରେ ପ୍ରତିମାମାନେ ପ୍ରତିନିଧିଭାବରେ ପୂଜିତ ହେବାର ବୈଦିକ ସିଦ୍ଧାନ୍ତ ଥିବାରୁ ମନ୍ଦିର ଦେବାଳୟ ପରମ ପବିତ୍ର ସ୍ଥାନ । ଏଣୁ ଯେଉଁମାନେ ମନ୍ଦିର ଦେବାଳୟ ନିର୍ମାଣ କିମ୍ବା ପୁନରୁଦ୍ଧାର ଓ ପ୍ରତିଷ୍ଠାଦି କରନ୍ତି, ସେମାନେ ବୈକୁଣ୍ଠ ଭବନକୁ ଗମନପୂର୍ବକ ସାଂସାରିକ ଯାତନାରୁ ନିଷ୍କୃତି ଲାଭ କରନ୍ତି ।

ମହାରାଜ ! ଯେଉଁମାନେ କି ପୁଣ୍ୟଶୀଳ, ଜନ୍ମଜନ୍ମାନ୍ତରାବଧି ଦାନ ଧ୍ୟାନ ଓ ନିଷ୍କାମ କର୍ମାନୁଷ୍ଠାନରେ ଆସକ୍ତ ସେହିମାନଙ୍କର ଯେପରି କି ଅତି ପବିତ୍ର ଅକ୍ଷୟ ଓ ଅଭୟପଦପ୍ରଦ ହରିଭକ୍ତି ଭାବରେ ଅଭିଳାଷ ଜାତ ହୋଇଥାଏ । ସେହିପରି ଭକ୍ତିଭାବରେ ଅଭିଳାଷ ଜାତ ହେବା ସକାଶେ ଆମ୍ଭେ ଆମ୍ଭର ଏହି ରାଧାକୃଷ୍ଣ ମୂର୍ତ୍ତିଯୁଗଳ ଅର୍ପଣ କଲୁଁ । ଆପଣ ଏହାଙ୍କୁ ପ୍ରତିଦିନ ଜଗଦ୍‌ବ୍ୟାପକ ଶ୍ରୀହରିଙ୍କ ପ୍ରତିନିଧି ଭାବରେ ପୂଜା କରି ଭବବନ୍ଧନରୁ ମୁକ୍ତ ହେବେ । ଆଉ ମଧ୍ୟ ଆପଣ ଆମ୍ଭର ଚିରସ୍ମରଣ ସକାଶେ ପ୍ରତିବର୍ଷ ବୈଶାଖ ପୂର୍ଣ୍ଣିମାରେ ହରିହାଟ ନାମରେ ଗୋଟିଏ

ମହାମେଳା ଅନୁଷ୍ଠାନ କରି ସେଠାରେ ଏହି ମୂର୍ତ୍ତିଦ୍ୱୟଙ୍କୁ ପୂଜା କରାଇବେ ।

ରାଜା—ମହାଭାଗ ! ଯେଉଁ ହରିହାଟ ମେଳାର କଥା କହିବା ହେଲେ, ତାହା କପରି ଭାବରେ ଅନୁଷ୍ଠାନ କରାଗଲେ ଶ୍ରୀହରି ସୁପ୍ରସନ୍ନ ହୁଅନ୍ତି ।

ସାଧୁ—ମହାରାଜ ! ମେଳା ସମ୍ବନ୍ଧରେ ପୁରାଣାଦିରେ ବିଶେଷ କିଛି ଉଲ୍ଲେଖ ହୋଇ ନାହିଁ, ମାତ୍ର ପୂର୍ଣ୍ଣିମା ବ୍ରତର ବିଧାନ ଓ ସେହି ବ୍ରତର ଉଦ୍‌ଯାପନ ବିଧାନ୍ ନାରଦୀୟ ପୁରାଣାଦିରେ ଉକ୍ତ ହୋଇଅଛି । ଯାହାହେଉ ମେଳା ସମ୍ବନ୍ଧରେ ଏହି କେବଳ କର୍ତ୍ତବ୍ୟ । ବୈଶାଖ ପୂର୍ଣ୍ଣିମାର ପୂର୍ବଦିନ ଶ୍ରୀ ଶ୍ରୀହରିଙ୍କ ପଦାଶ୍ରିତ ବୈଷ୍ଣବସେବକମାନେ ଶ୍ରୀ ଶ୍ରୀ ଗୌରହରିପ୍ରଚାରିତ ହରିନାମାମୃତ ପାନ କରି ସଙ୍କୀର୍ତ୍ତନ କରି ଶ୍ରୀ ଶ୍ରୀ ରାଧାକୃଷ୍ଣ ଯୁଗଳମୂର୍ତ୍ତି ବିମାନରେ ବିଜେ କରାଇ ମେଳାମଣ୍ଡପରେ ସମାସୀନ କରାଇବେ । ଏପରି ଭଗବଦ୍‌ମଣ୍ଡଳ ଓ ସଙ୍କୀର୍ତ୍ତନମଣ୍ଡଳ ଆହ୍ୱାନ କରି ଦେବସଭା ପ୍ରତିଷ୍ଠା କରିବେ । ଦେବାରାଧନା ସମୟରେ ନୃତ୍ୟ ଗୀତ ଶଙ୍ଖ ଭେରୀ ସହିତ ଗୀତା ଓ ପୁରାଣାଦି ପାଠ କରିବା କର୍ତ୍ତବ୍ୟ । ଏହା ପରେ ଦେବତାଙ୍କ ପୁରୋଭାଗରେ ଗୋଟିଏ ସ୍ଥଣ୍ଡିଳ ପ୍ରସ୍ତୁତ କରି ଏକବାର ଦ୍ୱିବାର ତ୍ରିବାର ଶତ ଓ ସହସ୍ରାଦି ବାର ପର୍ଯ୍ୟନ୍ତ ଆହୁତି ପ୍ରଦାନ କରାଯାଏ । ହୋମାନ୍ତେ ବିଧିବତ୍ ଶାନ୍ତି ଶୁକ୍ତ ଜପ କରି ପରେ ଧୂପଦୀପ ଓ ଭକ୍ଷ୍ୟ ନୈବେଦ୍ୟାଦିଦ୍ୱାରା ଦେବତାଙ୍କ ପୂଜା କରି ଅହରହ ସଙ୍କୀର୍ତ୍ତନ କରିବା କର୍ତ୍ତବ୍ୟ । ପରଦିନ ପ୍ରଭାତ ସମୟରେ ହରିଭକ୍ତମାନେ ଯଥାବିଧି ସଙ୍କୀର୍ତ୍ତନ ଶେଷରେ ପ୍ରସାଦ ଭକ୍ଷଣ କରି ପରେ ଠାକୁରମାନଙ୍କୁ ଗୀତ ଓ ନୃତ୍ୟାଦି-ସହ ନଗର ଭ୍ରମଣ କରାଇ ଅସ୍ଥାନକୁ ବିଜେ କରାଇବେ ।

ମହାରାଜ ! ପୂର୍ଣ୍ଣିମା ବ୍ରତର ଅନୁଷ୍ଠାନ ଏହିପରି କରାଯାଏ । ଯଥାː—କେହି କେହି କାର୍ତ୍ତିକର ପୂର୍ଣ୍ଣିମା, କେହି ଅବା ଜ୍ୟେଷ୍ଠ ପୂର୍ଣ୍ଣିମାର

ପ୍ରଭୂଷରେ ଯଥାବିଧି ସ୍ନାନ ସନ୍ଧ୍ୟାଦି ସମାପନ କରି ଶୁକ୍ଳବସ୍ତ୍ର ପରିଧାନପୂର୍ବକ ସଂକଳ୍ପ କରି ଗନ୍ଧ ପୁଷ୍ପ ଧୂପ ଦୀପ ଓ ନୈବେଦ୍ୟାଦିଦ୍ୱାରା ଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣଙ୍କର ପୂଜା କରନ୍ତୁ । ପୂଜାନ୍ତେ ଯଥାଶକ୍ତି ବ୍ରାହ୍ମଣ ଭୋଜନ କରାଇଲା ପରେ ସ୍ୱୟଂ ଆତ୍ମୀୟ ସ୍ୱଜନ ଓ ଭୃତ୍ୟାଦିମାନଙ୍କ ସହିତ ଭୋଜନ କରିବାକୁ ହୁଏ । ଏହିପରି ପ୍ରତି ମାସ ପୂର୍ଣ୍ଣିମାରେ ପୂଜା କରି ଅବଶେଷରେ କାର୍ତ୍ତିକ ଅଥବା ବୈଶାଖ ପୂର୍ଣ୍ଣିମାରେ ଏହି ବ୍ରତ ଉଦ୍‌ଯାପନ କରାଯାଏ । ଉଦ୍‌ଯାପନର ବିଧାନ ଏହି ଯେ, ପୂର୍ବପରି ସମସ୍ତ କାର୍ଯ୍ୟ ଶେଷ କରି ଚତୁରସ୍ରପରିମିତ ଗୋଟିଏ ମଣ୍ଡଳ ପ୍ରସ୍ତୁତ କରିବାକୁ ହୁଏ । ତାହା ମଧ୍ୟରେ ପଞ୍ଚବର୍ଣ୍ଣମୟ ସର୍ବତୋଭଦ୍ରମଣ୍ଡଳ ପ୍ରସ୍ତୁତ କରାଯାଏ । ତାହା ଉପରେ ବିଶୁଦ୍ଧ ଓ ପରିଷ୍କୃତ ବସ୍ତ୍ରାଚ୍ଛାଦିତ ଜଳପୂର୍ଣ୍ଣ ଗୋଟିଏ କଳସ ସ୍ଥାପନ କରି ତାହା ସ୍ୱର୍ଣ୍ଣ ରୌପ୍ୟାଦିଦ୍ୱାରା ଅଳଙ୍କୃତ କରି ତଦୁପରି ଲକ୍ଷ୍ମୀନାରାୟଣଙ୍କର ମୂର୍ତ୍ତି ସ୍ଥାପନ କରାଯାଏ । ଆଉ ମଧ୍ୟ ସେହି ସ୍ଥାନ ବିବିଧ ପୁଷ୍ପମାଳା ବିତାନ ଧୂପ ଦୀପ ଦର୍ପଣ ଓ ଚାମରାଦିଦ୍ୱାରା ସୁଶୋଭିତ କରାଯାଏ ।

ଅନନ୍ତର ଲକ୍ଷ୍ମୀନାରାୟଣଙ୍କୁ ପଞ୍ଚାମୃତରେ ସ୍ନାନ କରାଇ ଗନ୍ଧ ପୁଷ୍ପ ଧୂପ ଦୀପ ଓ ଭକ୍ଷ୍ୟ ନୈବେଦ୍ୟାଦିଦ୍ୱାରା ଭକ୍ତିପୂର୍ଣ୍ଣହୃଦୟରେ ପୂଜା କରାଯାଏ । ଏହା ପରେ ଦେବତାଙ୍କ ନିକଟରେ ଗୀତ ଉତ୍ସବରେ ରାତ୍ରି ଯାପନ କରି ସକାଳେ ଯଥାବିଧି ପୂଜାନ୍ତେ ଦକ୍ଷିଣା ସହିତ ଦେବପ୍ରତିମା ବ୍ରାହ୍ମଣ ହସ୍ତରେ ପ୍ରଦାନ କରାଯାଏ । ଅନନ୍ତର ବ୍ରାହ୍ମଣଭୋଜନ କରାଇ ଆତ୍ମୀୟ ଓ ସ୍ୱଜନ ସହିତ ସ୍ୱୟଂ ଭୋଜନ କରିବାକୁ ହୁଏ ।

ମହାରାଜ ! ପରମଭକ୍ତିସହକାରେ ଏହିପରି ଯାହା ଦ୍ୱାରା ଅନୁଷ୍ଠିତ ହେବା ସ୍ଥଳରେ ପୂର୍ଣ୍ଣିମା ବ୍ରତର ଉଦ୍‌ଯାପନ ସେହି ସ୍ଥାନରେ ଯଥାଶକ୍ତି ଓ ଯଥାବିଧିରେ ଅନୁଷ୍ଠିତ ହେଲେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରାଦି ବର୍ଣ୍ଣମାନଙ୍କର ସ୍ତ୍ରୀ ହେଉ ବା ପୁରୁଷ ହେଉ ତାହାର ସମସ୍ତ କାମନା ପୂର୍ଣ୍ଣ

ହୁଏ । ଏପରି ମହାତ୍ମା ବ୍ରତଧାରୀମାନେ ଯୋଗିଜନଦୁର୍ଲ୍ଲଭ ଶ୍ରୀମନ୍ନାରାୟଣଙ୍କର ପରମପଦ ପ୍ରାପ୍ତ ହୁଅନ୍ତି । ଏହି ବ୍ରତରେ ଲୋକେ ଦୃଢ଼ ବିଶ୍ୱାସ ରଖିଲେ ଉତ୍ତମ ଫଳ ଲାଭ କରନ୍ତି ।

ଏହା ପରେ ରାଜା ସେହି ତପସ୍ୱୀ ମହାତ୍ମାଙ୍କୁ ସର୍ବଜ୍ଞ ମନେ କରି ଜୀବନର ବୃତ୍ତାନ୍ତ ପଚାରିବାରେ ସାଧୁ କଲ୍ୟାଣ ବିଚାରି କହିବାକୁ ଆରମ୍ଭ କଲେ ।

ମହାରାଜ ! ଆପଣ ଯାହା କି ପଚାରିବା ହେଲେ, ତାହା ଆମ୍ଭେ ଯୋଗବଳରେ ସ୍ଥିର କଲୁଁ ଯେ, ଆପଣ ଆଗାମୀ ବୈଶାଖ ପୂର୍ଣ୍ଣିମାରେ ହରିହାଟ ନାମରେ ନୂତନ ମେଲା ପ୍ରତିଷ୍ଠା କରି ପ୍ରତିଷ୍ଠାର ଦଶ ମାସରେ ଇହଧାମ ପରିତ୍ୟାଗପୂର୍ବକ ସ୍ୱର୍ଗସୁଖ ଭୋଗ କରିବେ ।

ମହାରାଜ ! ଆପଣଙ୍କର ଶ୍ରୀ ନବକିଶୋରଚନ୍ଦ୍ର ଓ ସୁରେଶଚନ୍ଦ୍ର ନାମରେ ଅତିବିଜ୍ଞ ଓ ଚରିତ୍ରବାନ୍ ପୁତ୍ରଦ୍ୱୟ ବିଦ୍ୟମାନ ଥିବା ସ୍ଥଳରେ ଶୋକରେ କାତର ହେବା ଉଚିତ ନୁହେ । ଯଥା :—

"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣାନ୍ୟନ୍ୟାନି ସଂଯାତି ନବାନି ଦେହୀ ॥"

ସାର କଥା ଏହି ଯେ, ମନୁଷ୍ୟ ଯେପରି ପୁରାତନ ବସ୍ତ୍ର ପରିତ୍ୟାଗ କରି ଅପର ନୂତନ ବସ୍ତ୍ର ଗ୍ରହଣ କରେ, ସେହିପରି ଜୀବାତ୍ମା ପୁରାତନ ଶରୀର ପରିତ୍ୟାଗ କରି ଅନ୍ୟ ନୂତନ ଶରୀର ଧାରଣ କରନ୍ତି । ଯଥା :

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ॥

ଯେହେତୁ ଜାତ ହୋଇଥିବା ପ୍ରାଣୀର ମରଣ ନିଶ୍ଚୟ ଓ ମୃତ ପ୍ରାଣୀର ଜନ୍ମ ମଧ୍ୟ ନିଶ୍ଚୟ, ସେହି କାରଣରୁ ଏହି ଅନିବାର୍ଯ୍ୟ ବିଷୟରେ ଆପଣଙ୍କର ଶୋକ କରିବା ଉଚିତ ନୁହେ । ଯଥା :—

"ଚଳଚ୍ଚିତ୍ତଂ ଚଳଦ୍‌ବିତ୍ତଂ ଚଳଜ୍ଜୀବନ ଯୌବନଂ ।
ଚଳାଚଳମିଦଂ ସର୍ବଂ କୀର୍ତ୍ତିର୍ଯସ୍ୟ ସ ଜୀବତି ।"

ସାର କଥା ଏହି ଯେ, ସଂସାରରେ ସମସ୍ତ ଅସ୍ଥିର, କେବଳ କୀର୍ତ୍ତି ସ୍ଥିର; ଆପଣ ଧୈର୍ଯ୍ୟ ଅବଲମ୍ବନ କରନ୍ତୁ, ଏହି ମର୍ତ୍ତ୍ୟମଣ୍ଡଳରେ ଜନ୍ମଗ୍ରହଣ କଲେ ଦେବତା ପର୍ଯ୍ୟନ୍ତ ମୃତ୍ୟୁର ଅଧୀନ । ଏଣୁ ବିଷାଦ ଅବଲମ୍ବନ କରିବା ଉଚିତ ନୁହେଁ ।

ସୂର୍ଯ୍ୟଦେବ ଯେପରି ଉଦୟକାଳରେ ଆରକ୍ତିମା ଶୋଭାରେ ଶୋଭିତ, ଅସ୍ତକାଳରେ ମଧ୍ୟ ସେହିପରି ଆରକ୍ତିମା ଶୋଭାରେ ଶୋଭନ୍ତି । ଅର୍ଥାତ୍ ମହଜ୍ଜନମାନଙ୍କର ସମ୍ପଦରେ ଆନନ୍ଦ କିମ୍ବା ବିପଦରେ ବିଷାଦ କିଛି ନ ଥାଏ । ସୁତରାଂ ମହଜ୍ଜନମାନେ ସର୍ବଦା ଏକରୂପ । ଯଥା :—

"ଉଦେତି ସବିତା ତାମ୍ରସ୍ତାମ୍ରମେବାସ୍ତମେତି ଚ ।
ସମ୍ପତ୍ତୌ ଚ ବିପତ୍ତୌ ଚ ମହତାମେକରୂପତା ॥"

ମହାରାଜ ! ଅନ୍ତକାଳରେ ବିଭବ ବୈଭବ ପ୍ରଭୃତି ସହାୟ ନୁହେଁ । କେବଳ ହରିନାମ ଜୀବନର ଏକମାତ୍ର ସହାୟ । ଯଦି ଭବବନ୍ଧନରୁ ପରିତ୍ରାଣ ହେବାର ଇଚ୍ଛା ଥାଏ, ତେବେ ହରିଭକ୍ତିରୂପ ତରଣୀ ଅବଲମ୍ବନ କରନ୍ତୁ । ଗୋବିନ୍ଦଙ୍କ ଶ୍ରୀଚରଣରେ ଆଶ୍ରୟ ନିଅନ୍ତୁ । ସେ ପ୍ରତି ଅତ୍ର ବିଳମ୍ବ କରିବା, ଉପେକ୍ଷା କରିବା ଓ ଉଦାସୀନ ହେବା ଉଚିତ ନୁହେଁ । ହରି କେବଳ ପରମବନ୍ଧୁ ଓ ହରିନାମ ସହାୟ । ଗଙ୍ଗାରେ ସ୍ନାନ, ସନ୍ଧ୍ୟାନୁଷ୍ଠାନ ଓ ଅତିଥିପୂଜନାଦି ସତ୍କର୍ମରେ ଲାଭ ହୋଇଥାଏ; ମାତ୍ର ହରିଭକ୍ତି ସହଜସାଧ୍ୟ ନୁହେଁ । ଅସାର ପ୍ରାଣୀର ଦେହ କଷ୍ଟର ଆଧାର, କ୍ଷଣଭଙ୍ଗୁର ଓ ବିନାଶପ୍ରବଣ । ଦେଖ ! ଏହି ଅଛି ଏହି ନାହିଁ, ବୁଝିଲେ ଯେ ଉଠିଯିବ. ତହିଁରେ ନିଶ୍ଚୟ ନାହିଁ । ଏହି ଦେହ ଅପେକ୍ଷା ପରମପଦ,

ବ୍ୟାଧିର ମନ୍ଦିର ଓ ମଳଦୂଷିତ । ଏହି ସଂସାର ଅସାର, ନାନା କଷ୍ଟର ଆବାସନିଳୟ । ଏକା ଭକ୍ତର ଜୀବନ ସାର୍ଥକ, ସଫଳ ଓ ପବିତ୍ର । ଯେଉଁ ଚରଣଯୁଗଳ ବିଷ୍ଣୁଗୃହରେ ପ୍ରବେଶ କରେ, ସେହି କେବଳ ଶ୍ରୀଚରଣ । ଯେଉଁ ହସ୍ତରେ ନାରାୟଣଙ୍କର ପୂଜା କରାଯାଏ, ସେହି ହସ୍ତ ଭାଗ୍ୟର ନିଳୟ । ଯେଉଁ ନୟନ ଶ୍ରୀଚରଣ ଦର୍ଶନ କରେ, ସେହି କେବଳ ପବିତ୍ର ନୟନ । ଯେଉଁ ଜିହ୍ୱା ହରିନାମ ସଙ୍କୀର୍ତ୍ତନ କରେ, ତାହାହିଁ ସଫଳ ଜିହ୍ୱା ।

ମହାରାଜ ! ସେହି ଶ୍ରୀହରିଙ୍କ ପାଦପଦ୍ମରେ ମନୋନିବେଶ କରନ୍ତୁ, ତହିଁରୁ ପରତର କିଛି ନାହିଁ । ହରିନାମ, ହରିନାମ, ସତ୍ୟ ସତ୍ୟ ହରିନାମ ପରଲୋକରେ ସହାୟ ।

ଏଥି ଉତ୍ତରେ ସେହି ସାଧୁମହାତ୍ମା ରାଜା ମହୋଦୟଙ୍କ ବୋଧାର୍ଥ ସାଧୁପୁରୁଷମାନଙ୍କ ସମକ୍ଷରେ ପରଲୋକରେ ପ୍ରଭୃଧ୍ୱନିତ କର ନିମ୍ନଲିଖିତ ଶ୍ଳୋକମାନ ବୋଲି ନୃତ୍ୟ କରିବାକୁ ଆରମ୍ଭ କଲେ ।

"ଆରାଧିତୋ ଯଦି ହରିସ୍ତପସା ତତଃ କିଂ
ନାରାଧିତୋ ଯଦି ହରିସ୍ତପସା ତତଃ କିଂ ।
ଅନ୍ତର୍ବହିର୍ଯଦି ହରିସ୍ତପସା ତତଃ କିଂ
ନାନ୍ତର୍ବହିର୍ଯଦି ହରିସ୍ତପସା ତତଃ କିଂ ।"

"ଲବ୍ଧାକରେ ନରଜନ୍ମ ଶୁଭଂ ଚ ପଦ୍ମା
କିଂ ଦେବ୍ୟମସ୍ତି ଭବତେ ଜଗଦୀଶ୍ୱରସ୍ୟ ।
ରାଧାପରୀତମନସୋ ମନସୋଽସ୍ତି ଦୈନ୍ୟଂ
ଚଦୀୟତେ ଯଦୁପତେ ରୁଚିରଂ ଗୃହାଣ ।।"

"ନ ଧନଂ ନ ଜନଂ ନ ସୁନ୍ଦରୀଂ
କବିତାଂ ବା ଜଗଦୀଶ କାମୟେ ।

ମମ ଜନନ ଜନ୍ମାନ୍ତରେ ଭବତାତ୍
ଭକ୍ତିରହୈତୁକୀ ତ୍ୱୟି ॥"

"ଅସ୍ମାକନ୍ତୁ ନିସର୍ଗସୁନ୍ଦର ଚିରାଚ୍ଚେତୋ ନିମଗ୍ନଂ ତ୍ୱୟି
ତ୍ୱତ୍ଥାନନ୍ଦନିଧୌ ତଥାପି ତରଳଂ ନାଦ୍ୟାପି ସନ୍ତୃଷ୍ୟତେ ।
ତନ୍ନାଥ ତ୍ୱରିତଂ ବିଧେହି କରୁଣାଂ ଯେନ ତ୍ୱଦେକାଗ୍ରତାଂ
ପ୍ରାପ୍ତେ ଚେତସି ନାପ୍ନୁ ଯାମ ଶତଶୋଯାମ୍ୟାଃ ପୁନର୍ଯାତନାଃ ॥"

"ମୁକୁନ୍ଦ ମୂର୍ଦ୍ଧ୍ନା ପ୍ରଣିପତ୍ୟ ଯାଚେ
ଭବନ୍ତମେକାନ୍ତମିୟନ୍ତମର୍ଥଂ ।
ଅବିସ୍ମୃତିସ୍ତ୍ୱଚ୍ଚରଣାରବିନ୍ଦେ
ଭବେ ଭବେ ମେଽସ୍ତୁ ଭବତ୍ପ୍ରସାଦାତ୍ ॥"

"ଯତ୍ପାଦପଦ୍ମରଜସା ସହସାପ୍ୟହଲ୍ୟା
ଶୈଳୀଂ ବିହାୟ ତନୁମାପ ସୁଦିବ୍ୟରୂପାଂ ।
ସଦ୍ଭ୍ୟୋ ଯଦାଶ୍ରୟମୁପେତ୍ୟ ବିମୁକ୍ତିବନ୍ଧାଃ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦଂ ॥"

"ରୂପଂ ରୂପବିବର୍ଜିତସ୍ୟ ଭବତୋ ଧ୍ୟାନେନ ଯଦ୍ୱର୍ଣ୍ଣିତଂ
ସ୍ତୁତ୍ୟାନିର୍ବଚନୀୟତା ଖିଲଗୁରୋର୍ଦ୍ଦୂରୀକୃତା ଯନ୍ମୟା ।
ବ୍ୟାପିତ୍ୱଂ ଚ ନିରାକୃତଂ ଭଗବତୋ ଯତ୍ତୀର୍ଥ ଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ! ତତ୍ ବିକଳତା ଦୋଷତ୍ରୟଂ ମତ୍କୃତଂ ॥"

ଇତି ଶ୍ରୀ ସିଦ୍ଧେଶ୍ୱର ତ୍ରିପାଠୀ ତର୍କସିଦ୍ଧାନ୍ତକୃତ
"ଜ୍ଞାନଦର୍ପଣ" ସମାପ୍ତ ।



Printed by V. Kar, The Utkal Sahitya Press, Cuttack.

